# ଜଳନ୍ଧର ଦେବ

ରଚନା :
ଡକ୍ଟର ଉପେନ୍ଦ୍ରନାଥ ମହାନ୍ତି

ପ୍ରକାଶକ :
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ବର-୭୫୧୦୧୪

ମୁଦ୍ରଣ :
ଦ' ପ୍ରିଣ୍ଟୋଭର୍ସ
ମୈତ୍ରୀ ସରଣୀ, କଟକ-୧

ପ୍ରଥମ ପ୍ରକାଶ—୧୯୯୫

ମୂଲ୍ୟ : ଷୋହଳ ଟଙ୍କା

**JALANDHAR DEB**

*Written by*
**Dr. Upendranath Mohanty**

*Published by*
Orissa Sahitya Akademi
Bhubaneswar-751014

*Printed at*
The Printoverse
Maitree Sarani, Cuttack-1

First Edition—1995

*Price :* **Sixteen Rupees**

# ଅଗ୍ରଲେଖ

ଓଡ଼ିଆ ଭାଷା ଓ ସାହିତ୍ୟର ଅଭିବୃଦ୍ଧି ସାଧନ ଏବଂ ସାହିତ୍ୟରେ ଉଚିତମାନ ଓ ମୂଲ୍ୟବୋଧ ପ୍ରତିଷ୍ଠାର ଅଭିମୁଖ୍ୟ ନେଇ ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶନ ପରିଯୋଜନା ମାଧ୍ୟମରେ ବହୁ ମୂଲ୍ୟବାନ୍ ଓ ଦୁଷ୍ପ୍ରାପ୍ୟ ପାଣ୍ଡୁଲିପିର ପୁନରୁଦ୍ଧାର କରି ସେଗୁଡ଼ିକର ସଙ୍କଳନ, ସମ୍ପାଦନା ଓ ପ୍ରକାଶନ ପାଇଁ ସକ୍ରିୟ ଭାବରେ କାର୍ଯ୍ୟକରିଆସୁଅଛି । ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାବଗୁଡ଼ିକୁ ଲୋକଲୋଚନକୁ ଆଣିବା ସଙ୍ଗେ ସଙ୍ଗେ ଅନେକ ଅନବଦ୍ୟ ସଂସ୍କୃତ ଗ୍ରନ୍ଥ, ଇଂରାଜୀ ଭାଷାରେ ରଚିତ ଉଚ୍ଚକୋଟୀର ହିନ୍ଦୀ ସାହିତ୍ୟର ଅନୁବାଦ, ଓଡ଼ିଆ ସାହିତ୍ୟ ସଂସ୍କୃତି ଉପରେ ଆଧାରିତ କେତେକ ଗବେଷଣାଧର୍ମୀ ଇଂରାଜୀ ପୁସ୍ତକ ଏବଂ କୃତୀ ଲେଖକମାନଙ୍କର ଜୀବନୀ ଉପରେ କ୍ଷୁଦ୍ର ପୁସ୍ତିକାମାନ ମଧ୍ୟ ଓଡ଼ିଶା ସାହିତ୍ୟ ଏକାଡେମୀଦ୍ୱାରା ପ୍ରକାଶିତ ହୋଇ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିକୁ ଋଦ୍ଧିମନ୍ତ କରିବା ସଙ୍ଗେ ସଙ୍ଗେ ସଂସ୍କୃତ ଓ ଇଂରାଜୀ ସାହିତ୍ୟର ମଧ୍ୟ ଶ୍ରୀବୃଦ୍ଧି ସାଧନ କରୁଅଛି । ରାଜ୍ୟରେ ଏକ ସାରସ୍ୱତ ବାତାବରଣ ସୃଷ୍ଟି କରିବାର ଅଭିମୁଖ୍ୟ ନେଇ ପ୍ରକାଶନ କାର୍ଯ୍ୟକ୍ରମକୁ ଅଧିକ ପ୍ରସାରିତ ଓ ଲୋକପ୍ରିୟ କରିବା ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ସର୍ବଦା ସାଧନାରତ ।

ଡକ୍ଟର ଉପେନ୍ଦ୍ରନାଥ ମହାନ୍ତି ବହୁ ଶ୍ରମ ସ୍ୱୀକାରକରି ଓଡ଼ିଶାର ଅନ୍ୟତମ ସ୍ୱାଧୀନଚିନ୍ତକ, ବହୁଦର୍ଶୀ ସାହିତ୍ୟସାଧକ ଜଳଧର ଦେବଙ୍କ ଉପରେ ଯେଉଁ ପୁସ୍ତିକାଟି ରଚନା କରିଛନ୍ତି ତାହା ପାଠକଙ୍କର ଆଦୃତ ଲାଭ କରିବ ବୋଲି ଆଶା ।

ରାଜକିଶୋର ମିଶ୍ର,
ସମ୍ପାଦକ ।

# ସୂଚୀପତ୍ର

| ବିଷୟ | | ପୃଷ୍ଠା |
|---|---|---|




# ଆଧୁନିକ ଓଡ଼ିଆ ସାହିତ୍ୟ ଓ ବାମଣ୍ଡା

ଅଧୁନା କେବଳ ପୁସ୍ତକର ପୃଷ୍ଠା ମଣ୍ଡନ କରୁଥିବା ବାମଣ୍ଡା ଦେଶୀୟ ରାଜ୍ୟର ଐତିହ୍ୟପୂର୍ଣ୍ଣ ଅତୀତ ସର୍ବଦା ସ୍ମରଣଯୋଗ୍ୟ । ଆଧୁନିକ ଓଡ଼ିଆ ସାହିତ୍ୟର ବିକାଶ ନିମିତ୍ତ ଏହି ରାଜ୍ୟର ବହୁ ବିଶିଷ୍ଟ ବ୍ୟକ୍ତି ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଏମାନଙ୍କ ମଧ୍ୟରେ ସାହିତ୍ୟିକ ରାଜା ବାସୁଦେବ, ସୁଢ଼ଳ ଦେବ ଓ ରାଜକବି ସଚ୍ଚିଦାନନ୍ଦଙ୍କ ନାମ ସର୍ବାଦୌ ସ୍ମରଣୀୟ । ଏହି ଶାସକଦ୍ୱୟଙ୍କ ପ୍ରତ୍ୟକ୍ଷ ସହଯୋଗ ଫଳରେ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ବାମଣ୍ଡା ରାଜ୍ୟରେ ଏକ ଉନ୍ନତ ସାରସ୍ୱତ ପରିବେଶ ସୃଷ୍ଟି ହୋଇ ପାରିଥିଲା । ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା (୧୮୮୬), ସମ୍ବଲପୁର ହିତୈଷିଣୀ, ବିଜୁଳି, ଆଲୋଚନା, ଉତ୍କଳ ମଧୁପ ପ୍ରଭୃତି ପତ୍ରପତ୍ରିକାର ପ୍ରକାଶ ଫଳରେ କେବଳ ବାମଣ୍ଡାରେ ନୁହେଁ, ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ଆଧୁନିକ ସଭ୍ୟତା ଓ ସଂସ୍କୃତି ପ୍ରତି ଏକ ନୂତନ ଦୃଷ୍ଟିକୋଣ ସୃଷ୍ଟି ହୋଇଥିଲା । ଘନ ଅରଣ୍ୟ ପାହାଡ଼ ପର୍ବତ ପରିବେଷ୍ଟିତ ଏହି ଉପାନ୍ତ ଅଞ୍ଚଳ ଗମନାଗମନ ଦୃଷ୍ଟିରୁ ଉପକୂଳବର୍ତ୍ତୀ ଅଞ୍ଚଳଠାରୁ ସମ୍ପର୍କଶୂନ୍ୟ ଥିଲାବେଳେ ସେହି ରାଜ୍ୟର ଶାସକମାନଙ୍କ ସ୍ୱାଭିମାନ ତଥା ଜାତୀୟତାବୋଧ ଫଳରେ ସମସ୍ତ ଓଡ଼ିଆ ଜାତି ସହିତ ଭାବଗତ ଏକାତ୍ମତା ପ୍ରତିଷ୍ଠିତ ହୋଇ ପାରିଥିଲା । କେତେକ ସ୍ୱାର୍ଥକେନ୍ଦ୍ରିକ ଅନ୍ୟ ଭାଷାଭାଷୀ-ମାନଙ୍କ କୂଟଚକ୍ରାନ୍ତ ଯୋଗୁଁ ଯେତେବେଳେ ଓଡ଼ିଆ ଭାଷାର ବିଲୋପ ସାଧନ ପାଇଁ ବିଧିବଦ୍ଧ ପ୍ରୟାସ ଆରମ୍ଭ ହୋଇଥିଲା ଏବଂ ଅନ୍ୟ କେତେକ ରକ୍ଷଣଶୀଳ ଓଡ଼ିଆ ସାହିତ୍ୟିକମାନଙ୍କ ଅଦୂରଦର୍ଶିତା ଯୋଗୁଁ ଓଡ଼ିଆ ସାହିତ୍ୟରେ ଆଧୁନିକ ଧାରାର ଗତିରୋଧ କରାଯାଉଥିଲା, ସେତେବେଳେ ଏହି ରାଜବଂଶର ଆନ୍ତରିକ ପ୍ରୟାସ ଓ ପ୍ରଚେଷ୍ଟା ଫଳରେ ଓଡ଼ିଆ ଭାଷା ସାହିତ୍ୟର ପ୍ରଭୂତ ଉନ୍ନତି ସମ୍ଭବ ହୋଇଥିଲା । ଏହି ସମୟର ବାମଣ୍ଡା ରାଜ୍ୟରେ ଉଜ୍ଜୀବିତ ସାରସ୍ୱତ ସାଧନାକୁ ସ୍ୱୀକୃତିପୂର୍ବକ ବ୍ୟାସକବି ଫକୀର ମୋହନ ସେନାପତି ଏହାକୁ ଉତ୍କଳର ଉଜ୍ଜୟିନୀ ବୋଲି ଅଭିହିତ କରି ତାହାଙ୍କ 'ଉତ୍କଳ ଭ୍ରମଣ' କବିତାରେ ଲେଖିଥିଲେ—

କବିତ୍ୱ ସାହିତ୍ୟ ଚର୍ଚ୍ଚା ଶିଳ୍ପାଦି ସହିତ,
ଉତ୍କଳର ଉତ୍ସର୍ଗିଣୀ ବାମଣ୍ଡା ବିଦିତ ।

ସାହିତ୍ୟ ସଂସ୍କୃତି ଶିକ୍ଷା ଆଦି କ୍ଷେତ୍ରରେ ବାମଣ୍ଡାର ଯେଉଁ ନବ ଜାଗରଣ ସୃଷ୍ଟି ହୋଇଥିଲା, ତାହାର ପ୍ରକୃତ ସୂତ୍ରଧର ଥିଲେ ରାଜା ବାସୁଦେବ ସୁଢ଼ଳ ଦେବ (୧୮୫୦-୧୯୦୩) । ସେ କେବଳ ଜଣେ ଦୂରଦର୍ଶୀ ବିଶ୍ୱରବନ୍ତ ପ୍ରଶାସକ ନଥିଲେ, ଅସାମାନ୍ୟ ପ୍ରତିଭାର ଅଧିକାରୀ ମଧ୍ୟ ଥିଲେ । ସେ ନିଜେ ସାହିତ୍ୟ ରଚନା କ୍ଷେତ୍ରରେ ମନୋନିବେଶ କରିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ସାହିତ୍ୟ ସାଧନା ପାଇଁ ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରୋତ୍ସାହନ ଯୋଗାଇ ଦେଉଥିଲେ । ତାହାଙ୍କ ପ୍ରୟାସ ଓ ପ୍ରଯତ୍ନ ଫଳ ସ୍ୱରୂପ ଏହି ରାଜ୍ୟରେ ବହୁ ଆଧୁନିକ ଶିକ୍ଷାନୁଷ୍ଠାନମାନ ପ୍ରତିଷ୍ଠିତ ହୋଇଥିଲା । ବହୁ ସାଂସ୍କୃତିକ ସମାବେଶର ଆୟୋଜନ କରି ବିଶିଷ୍ଟ ପଣ୍ଡିତ ଲେଖକମାନଙ୍କୁ ସେ ସମ୍ମାନିତ କରିଥିଲେ । ସମସାମୟିକ ଉତ୍କଳର ବିଶିଷ୍ଟ କବି ଲେଖକମାନଙ୍କ ସମାଗମ ଫଳରେ ସେଠାରେ ଏକ ନୂତନ ସାହିତ୍ୟିକ ବାତାବରଣ ସୃଷ୍ଟି ହୋଇଥିଲା । ଫଳରେ ସେହି ରାଜବଂଶର ପରବର୍ତ୍ତୀ ବଂଶଧରଗଣ ତଥା ସେହି ଅଞ୍ଚଳର ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତିଗଣ ସାହିତ୍ୟ ଚର୍ଚ୍ଚାରେ ମନୋନିବେଶ କରି ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଉନ୍ନତିକୁ ଜୀବନର ଏକ ମହତ କର୍ତ୍ତବ୍ୟରୂପେ ଗ୍ରହଣ କରି ନେଇଥିଲେ । ରାଜା ସୁଢ଼ଳ ଦେବ ଓ ରାଜକବି ସଚ୍ଚିଦାନନ୍ଦଙ୍କ ବ୍ୟତୀତ ବାମଣ୍ଡାର ସାହିତ୍ୟିକ ପରିବେଶକୁ ଯେଉଁମାନେ ସମୃଦ୍ଧ କରିଥିଲେ ସେମାନଙ୍କ ମଧ୍ୟରେ ଜଳନ୍ଧର ଦେବ, ବଳଭଦ୍ର ଦେବ, ରାଜୀବଲୋଚନ ଦେବ, ଲଳିତ ମୋହନ ଦେବ, ବୃନ୍ଦାବନ ନାୟଶର୍ମା, ହରିହର ମହାପାତ୍ର, ଲିଙ୍ଗରାଜ ପାଣିଗ୍ରାହୀ, ଦିବ୍ୟରାଜ ସିଂହ, ଦୀନବନ୍ଧୁ ଗଡ଼ନାୟକ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

□

# ସାହିତ୍ୟିକ ଜଳନ୍ଧର ଦେବ

ଦେବଗଡ଼ ସହରର ଲାଲୁସାହିସ୍ଥ ରାଜକୀୟ ଢାଞ୍ଚାରେ ନିର୍ମିତ ଗୃହଗୁଡ଼ିକ ଆଜି ଜୀର୍ଣ୍ଣଶୀର୍ଣ୍ଣ ହୋଇଥିଲେ ମଧ୍ୟ ସେସବୁର ପୃଷ୍ଠପଟରେ ଏକ ବିରାଟ ପରମ୍ପରାର ସୂଚନା ଦିଏ । ଏହି ଲାଲୁସାହିର ଗୋଟିଏ ପ୍ରାନ୍ତରେ ଅବସ୍ଥିତ ଏକ ଜରାଜୀର୍ଣ୍ଣ ଦ୍ୱିତଳ ପ୍ରାସାଦ ଥିଲା ସାହିତ୍ୟିକ ଜଳନ୍ଧରଙ୍କ ସାଧନା ପୀଠ । ସର୍ବଗ୍ରାସୀ କାଳ ତାହାର କଳେବରକୁ କ୍ଷତବିକ୍ଷତ କରିଥିଲେ ମଧ୍ୟ ଆଭିଜାତ୍ୟର ଅହଙ୍କାରକୁ ସମ୍ପୂର୍ଣ୍ଣଭାବରେ ଖର୍ବ କରିପାରିନାହିଁ । ସେହି ରାଜକୀୟ ପ୍ରାସାଦ ଥିଲା ଦୀର୍ଘଦିନ ଧରି ସାହିତ୍ୟିକ, ସମାଜସେବୀ ତଥା ରାଜନୀତିଜ୍ଞ ଜଳନ୍ଧରଙ୍କ ବାସଗୃହ । ଆଜି ତାହା ପରିତ୍ୟକ୍ତ ନହୋଇ ଥିଲେ ହେଁ ଉପଯୁକ୍ତ ରକ୍ଷଣାବେକ୍ଷଣର ଅଭାବରେ ଅବହେଳିତ ।

ବାମଣ୍ଡାର ରାଜବଂଶୀୟ ଏକ ପରିବାରରେ ସାହିତ୍ୟିକ ଜଳନ୍ଧର ଦେବଙ୍କ ଜନ୍ମ । ବାମଣ୍ଡା ରାଜ୍ୟର ରାଜଧାନୀ ଦେବଦୁର୍ଗ ବା ଆଧୁନିକ ଦେବଗଡ଼ଠାରୁ ମାତ୍ର ପାଞ୍ଚ କିଲୋମିଟର୍ ଦୂରବର୍ତ୍ତୀ 'କଣିଆ କଲଣ୍ଡା' ଗ୍ରାମର ଏକ ଖରପୋଷଦାର ପରିବାରରେ ୧୮୭୬ ମସିହା ଅକ୍ଟୋବର ମାସ ପନ୍ଦର ତାରିଖ ଦିନ ସ୍ୱର୍ଗତ ଜଳନ୍ଧର ଦେବଙ୍କର ଜନ୍ମ । ଜନ୍ମର ମାତ୍ର ଅଳ୍ପ କେତେଦିନ ଅନ୍ତରରେ ତାହାଙ୍କ ମାତୃ ବିୟୋଗ ଘଟିବାରୁ ପିତା ବୀରଭଦ୍ର ଦେବ ଅନନ୍ୟୋପାୟ ହୋଇ ଶିଶୁପୁତ୍ରର ଉପଯୁକ୍ତ ଲାଳନପାଳନ ନିମନ୍ତେ ରାଜମାତା ବିଜୟକୁମାରୀଙ୍କୁ ଅର୍ପଣ କରିଥିଲେ । ବିଜୟକୁମାରୀ ଥିଲେ ରାଜା ବାସୁଦେବ ସୁଢ଼ଳ ଦେବଙ୍କ ଦ୍ୱିତୀୟ ମାତା । ସନ୍ତାନହୀନା ରାଜମାତା ଜଳନ୍ଧରଙ୍କୁ ପୁତ୍ରତୁଲ୍ୟ ଲାଳନପାଳନ କରିଥିଲେ । ଅଳ୍ପଦିନ ପରେ ରାଜା ବାସୁଦେବ ସୁଢ଼ଳ ଦେବଙ୍କ ସୁଯୋଗ୍ୟ ପୁତ୍ର ସଚ୍ଚିଦାନନ୍ଦଙ୍କ ଜନ୍ମ ହୋଇଥିଲା । ଜଳନ୍ଧରଙ୍କ ପରି ସଚ୍ଚିଦାନନ୍ଦ ମଧ୍ୟ ଜନ୍ମ ପରେ ପରେ ମାତୃହରା ହେଲେ । ଫଳରେ ଦୁଇଶିଶୁ ପୁତ୍ରଙ୍କ ଲାଳନପାଳନ ଦାୟିତ୍ୱ ବିଜୟକୁମାରୀଙ୍କ ଉପରେ ନ୍ୟସ୍ତ ହେଲା ।

ପାରିବାରିକ ସମ୍ପର୍କରେ ଜଳନ୍ଧର ଓ ସଚ୍ଚିଦାନନ୍ଦ ଥିଲେ କକା ଓ ପୁତୁରା । କିନ୍ତୁ ବୟସର ତାରତମ୍ୟ ଏତେ ସ୍ୱଳ୍ପ ଥିଲା ଯେ ଶୈଶବାବସ୍ଥାରୁ ଦୁଇଜଣଙ୍କ ମଧ୍ୟରେ ନିବିଡ଼ ବନ୍ଧୁତ୍ୱ ପ୍ରତିଷ୍ଠିତ ହୋଇଥିଲା । ପରବର୍ତ୍ତୀ ଜୀବନରେ ଏହି ବନ୍ଧୁତ୍ୱ ଅଧିକରୁ

ଅଧିକ ଦୃଢ଼ ହୋଇ ପ୍ରଶାସନିକ ତଥା ଅନ୍ୟାନ୍ୟ ରାଜକର୍ମରେ ପରସ୍ପର ମଧ୍ୟରେ ନିବିଡ଼ ଯୋଗାଯୋଗ ରକ୍ଷା କରିଥିଲି ।

ସେ ସମୟରେ ବାମଣ୍ଡାରେ ଆଧୁନିକ ଶିକ୍ଷାର କୌଣସି ବ୍ୟବସ୍ଥା ନଥିଲି । ଫଳରେ ରାଜକୁମାର ସଚ୍ଚିଦାନନ୍ଦ ଓ ଜଳନ୍ଧର ଦେବଙ୍କ ବାଲ୍ୟ ଶିକ୍ଷାର ପ୍ରୟୋଜନକୁ ଦୃଷ୍ଟିରେ ରଖି ରାଜା ସୁଢ଼ଳ ଦେବ ୧୮୮୨ ମସିହାରେ ଦେବଗଡ଼ଠାରେ ରାଜକୁମାର ଉଚ୍ଚ ଇଂରାଜୀ ବିଦ୍ୟାଳୟର ପ୍ରତିଷ୍ଠା କରିଥିଲେ । ଦୁଇଜଣ ଏକଣି ସେହି ସ୍କୁଲରେ ଛାତ୍ର ଜୀବନ ଆରମ୍ଭ କରି ୧୮୯୪-୯୫ରେ ପ୍ରବେଶିକା ପରୀକ୍ଷାରେ ପ୍ରବେଶ କରିଥିଲେ ।

ଏହି ରାଜକୁମାର ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କାଳରେ ଜଳନ୍ଧର ଦେବଙ୍କ ସାହିତ୍ୟିକ ଜୀବନର ଅସ୍ୱମାରମ୍ଭ ହୋଇଥିଲି । ବାମଣ୍ଡାର ସାଂସ୍କୃତିକ ଅଭ୍ୟୁତ୍ଥାନରେ ଏହି ବିଦ୍ୟାଳୟର ଏକ ବିଶିଷ୍ଟ ଭୂମିକା ଥିଲି । କାରଣ ସେତେବେଳେ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ଆଧୁନିକ ଶିକ୍ଷାନୁଷ୍ଠାନର ସଂଖ୍ୟା ଥିଲି ଅତି ସୀମିତ । ଓଡ଼ିଶାର ୨୬ଟି ଦେଶୀୟ ରାଜ୍ୟ ମଧ୍ୟରୁ କେବଳ ମୟୂରଭଞ୍ଜ ଓ ସୋନପୁର ଭଳି ୩।୪ଟି ସ୍ଥାନରେ ଉଚ୍ଚ ଇଂରାଜୀ ବିଦ୍ୟାଳୟମାନ ପ୍ରତିଷ୍ଠିତ ହୋଇଥିଲି । ବାମଣ୍ଡାରେ ଏହି ବିଦ୍ୟାଳୟ ପ୍ରତିଷ୍ଠିତ ହେବା ପରେ ବହୁ ବିଶିଷ୍ଟ ବ୍ୟକ୍ତି ଏଥିରେ ଶିକ୍ଷକ ରୂପେ ଯୋଗ ଦେଇଥିଲେ । ଏହାର ପ୍ରଥମ ପ୍ରଧାନ ଶିକ୍ଷକ ଥିଲେ ପ୍ରଖ୍ୟାତ ସାହିତ୍ୟିକ ବିଜୟ ଚନ୍ଦ୍ର ମଜୁମ୍‌ଦାର । ଏହାଙ୍କ ପରେ ଗଣେଶ୍ୱର ପଟ୍ଟନାୟକ ପ୍ରଧାନ ଶିକ୍ଷକ ହୋଇଥିଲେ । ସ୍କୁଲରେ ଶିକ୍ଷାଦାନ ଓ ପ୍ରଶାସନିକ କାର୍ଯ୍ୟ ବ୍ୟତୀତ ବାମଣ୍ଡାର ଶିକ୍ଷା ବିକାଶ କ୍ଷେତ୍ରରେ ସ୍ୱର୍ଗତ ପଟ୍ଟନାୟକ ବହୁ ସଂସ୍କାରମୂଳକ ପଦକ୍ଷେପ ଗ୍ରହଣ କରି ସୁନାମ ଅର୍ଜନ କରିପାରିଥିଲେ । ତାଙ୍କର କର୍ମଦକ୍ଷତା, ଅମାୟିକ ତଥା ଜ୍ଞାନପିପାସୁ ବ୍ୟକ୍ତିତ୍ୱ ସେତେବେଳେ ଛାତ୍ର ସମାଜକୁ ବହୁ ଭାବରେ ପ୍ରଭାବିତ କରିଥିଲି । ଏହାଙ୍କ ପ୍ରୟାସରେ ୧୮୯୦ ମସିହାରେ 'ବାମଣ୍ଡା ଛାତ୍ର ସମ୍ମିଳନୀ ସଭା' ପ୍ରତିଷ୍ଠିତ ହେଲି । ସେହି ସଭାର ପ୍ରଧାନ ଉଦ୍ଦେଶ୍ୟ ଥିଲି ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଉନ୍ନତି ସାଧନ । ଉନ୍ନତ ଭାବଗର୍ଭକ ପ୍ରବନ୍ଧ ରଚନା ପ୍ରତି ଛାତ୍ରମାନଙ୍କୁ ଆକୃଷ୍ଟ କରାଇବା ପାଇଁ ଏହି ସଭା ପକ୍ଷରୁ ପ୍ରତି ସପ୍ତାହରେ ପ୍ରବନ୍ଧ ପାଠୋତ୍ସବ ଅନୁଷ୍ଠିତ କରାଯାଉଥିଲି । ସର୍ବଶ୍ରେଷ୍ଠ ପ୍ରାବନ୍ଧିକଙ୍କୁ ପୁରସ୍କୃତ ମଧ୍ୟ କରାଯାଉଥିଲି । ଏହି ପ୍ରବନ୍ଧ ପାଠୋତ୍ସବର କାର୍ଯ୍ୟଧାରା ଅତି ଶୃଙ୍ଖଳିତ ଭାବରେ ସାଧିତ ହେଉଥିଲି । ପ୍ରତି ସପ୍ତାହର ସୋମବାର ଦିନ ଶିକ୍ଷକମାନେ କୌଣସି ଗୋଟିଏ ବିଷୟ ନିର୍ବାଚିତ କରି ଦେଉଥିଲେ । ସେହି ସପ୍ତାହର ରବିବାର ଦିନ ନିର୍ଦ୍ଦିଷ୍ଟ ସମୟରେ ଲିଖିତ ପ୍ରବନ୍ଧଗୁଡ଼ିକ ପାଠ କରାଯାଇ ସେସବୁର ଦୋଷ ତ୍ରୁଟି ନିର୍ଦ୍ଦେଶନା ସହ ମୂଲ୍ୟାୟନ

କରାଯାଉଥିଲା । ଏହି ସଭାର ପ୍ରଥମ ସଭାପତି ଥିଲେ ସଚ୍ଚିଦାନନ୍ଦ ଓ ଜଳନ୍ଧର ଦେବ ଏହାର ପ୍ରଥମ ସମ୍ପାଦକ ଭାବେ ଦାୟିତ୍ୱ ବହନ କରିଥିଲେ । ଏହି ସଭାର କର୍ମଧାରା ସହିତ ଘନିଷ୍ଠ ଭାବେ ସମ୍ପର୍କିତ ରହି ପ୍ରବନ୍ଧ ରଚନା ପ୍ରତି ଜଳନ୍ଧରଙ୍କର ବିଶେଷ ଆକର୍ଷଣ ସୃଷ୍ଟି ହୋଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ପରବର୍ତ୍ତୀ ଜୀବନରେ ପ୍ରବନ୍ଧ ରଚନା କ୍ଷେତ୍ରରେ ତାଙ୍କର ଅପୂର୍ବ ସଫଳତା ପଛରେ ଏହି 'ବାମଣ୍ଡା ଛାତ୍ର ସମ୍ମିଳନୀ'ର ପ୍ରଭାବକୁ ଅସ୍ୱୀକାର କରାଯାଇ ନପାରେ ।

ପ୍ରବେଶିକା ପର୍ଯ୍ୟନ୍ତ ଶିକ୍ଷା ସମାପ୍ତ କରି ୧୮୯୫ ମସିହା ବେଳକୁ ସେ କର୍ମ ଜୀବନରେ ପ୍ରବେଶ କରିଥିଲେ । ସେତେବେଳର ରୀତିନୀତି ଅନୁସାରେ ସେ ଏହି ସମୟରେ ବଣେଇ ରାଜ୍ୟ ସୀମା ସନ୍ନିକଟବର୍ତ୍ତୀ 'ଲଇମୁରା' ଗ୍ରାମର ଖରପୋଷଦାର ଅଭିରାମ ଦେବଙ୍କ କନ୍ୟା ସତ୍ୟଭାମାଙ୍କୁ ବିବାହ କରିଥିଲେ ।

୧୮୯୫ ମସିହାରେ ବାମଣ୍ଡା ରାଜ୍ୟ ପ୍ରଶାସନରେ ସେ ପ୍ରଥମେ ସିରସ୍ତାଦାର ରୂପେ ଯୋଗ ଦେଇଥିଲେ । ୧୯୦୨ ମସିହାରେ ସେ ଦ୍ୱିତୀୟ ଶ୍ରେଣୀ ବିଗ୍ଭରପତିଙ୍କ କ୍ଷମତା ସହ ତହସିଲଦାର ରୂପେ ଦାୟିତ୍ୱ ଗ୍ରହଣ କରିଥିଲେ । ତାହାଙ୍କ ପ୍ରଶାସନିକ ଦକ୍ଷତା ଯୋଗୁ ପରବର୍ତ୍ତୀ କାଳରେ ସେ ପ୍ରଥମ ଶ୍ରେଣୀ ବିଗ୍ଭରପତି ରୂପେ କାର୍ଯ୍ୟଭାର ଗ୍ରହଣ କରିଥିଲେ । ସ୍ୱଳ୍ପ ସମୟ ପାଇଁ ସେ ବାମଣ୍ଡା ପ୍ରଶାସନର ସର୍ବୋଚ୍ଚ ପଦବୀ ଦେଓ୍ୱାନ ରୂପେ ଦକ୍ଷତାର ସହ କାର୍ଯ୍ୟନିର୍ବାହ କରି ୧୯୨୫ ମସିହାରେ ଅବସର ଗ୍ରହଣ କରିଥିଲେ । ତାହାଙ୍କର ଏହି ଦୀର୍ଘ ତିରିଶ ବର୍ଷର ପ୍ରଶାସନିକ କାର୍ଯ୍ୟକାଳ ମଧ୍ୟରେ ସେ ବାମଣ୍ଡା ରାଜ୍ୟର ବିଭିନ୍ନ ବିକାଶମୂଳକ କାର୍ଯ୍ୟକ୍ରମ ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ ଥିଲେ । ଏହି ଦେଶୀୟ ରାଜ୍ୟରେ ସାମାଜିକ, ସାଂସ୍କୃତିକ ତଥା ସାହିତ୍ୟିକ ପରିବେଶର ଉନ୍ନତି ପାଇଁ ଯେତେ ପ୍ରକାର କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା, ସ୍ୱର୍ଗତ ଜଳନ୍ଧର ଦେବ ଥିଲେ ସେ ସବୁର ଅନ୍ୟତମ କର୍ଣ୍ଣଧାର । ତାହାଙ୍କର କର୍ମଦକ୍ଷତା ଉପରେ ରାଜା ସଚ୍ଚିଦାନନ୍ଦଙ୍କର ଅଖଣ୍ଡ ବିଶ୍ୱାସ ଓ ଆସ୍ଥା ଥିଲା । ଫଳରେ ଯେଉଁ ସବୁ ନୂତନ କାର୍ଯ୍ୟ ଆରମ୍ଭ କରାଯାଉଥିଲା, ଜଳନ୍ଧରଙ୍କୁ ହିଁ ପ୍ରମୁଖ ଦାୟିତ୍ୱ ଅର୍ପିତ ହେଉଥିଲା ।

ଆଧୁନିକ ସଭ୍ୟତାର ଆଲୋକରେ ବାମଣ୍ଡା ରାଜ୍ୟର ଜନସାଧାରଣଙ୍କୁ ଆଲୋକିତ କରିବା ପାଇଁ ହେଲେ ଆଧୁନିକ ସାହିତ୍ୟର ଉନ୍ନତି ସାଧନ ଏକାନ୍ତ ଅପରିହାର୍ଯ୍ୟ ବୋଲି ରାଜା ସଚ୍ଚିଦାନନ୍ଦ ଦେବ ହୃଦୟଙ୍ଗମ କରିପାରିଥିଲେ । ସେଥିପାଇଁ ସେ ନିଜେ ସାହିତ୍ୟ ସାଧନାରେ ମନୋନିବେଶ କରିଥିଲେ । ସାହିତ୍ୟର ପ୍ରଗ୍ଭର ଓ ପ୍ରସାର ନିମନ୍ତେ ପତ୍ରପତ୍ରିକାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିବାରୁ ବାମଣ୍ଡାରେ ଏକ

ଛାପାଖାନା ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ ହୋଇଥିଲା । ଏଥିପାଇଁ କଟକସ୍ଥ 'ଫୁଲ୍ଲ ପ୍ରେସ'କୁ ୧୮୮୬ ମସିହାରେ ବାମଣ୍ଡାକୁ ସ୍ଥାନାନ୍ତରିତ କରାଗଲା ଓ ଏହାର ନୂତନ ନାମ ହେଲା 'ଜଗନ୍ନାଥ ବଲ୍ଲଭ ପ୍ରେସ' । ଦେବଗଡ଼ର ଏହି 'ଜଗନ୍ନାଥ ବଲ୍ଲଭ ପ୍ରେସ'ରୁ ୧୮୮୯ ମସିହାରେ ପ୍ରକାଶିତ ହେଲା ପ୍ରସିଦ୍ଧ ପତ୍ରିକା 'ସମ୍ବଲପୁର ହିତୈଷିଣୀ' । ଓଡ଼ିଶାର ସାମାଜିକ, ସାଂସ୍କୃତିକ ତଥା ସାହିତ୍ୟିକ ଜୀବନରେ ୧୯୨୩ ମସିହା ପର୍ଯ୍ୟନ୍ତ ଏହି ପତ୍ରିକା ବିଶିଷ୍ଟ ଭୂମିକା ଗ୍ରହଣ କରିଥିଲା । 'ସମ୍ବଲପୁର ହିତୈଷିଣୀ' ପତ୍ରିକାର ଏହି ଦୀର୍ଘକାଳ ସ୍ଥାୟିତ୍ୱ ମୂଳରେ ଜଳନ୍ଧର ଦେବଙ୍କ କର୍ତ୍ତବ୍ୟନିଷ୍ଠା ତଥା କର୍ମଦକ୍ଷତା ବିଦ୍ୟମାନ ଥିଲା । ସେ ଏହି ପତ୍ରିକାର କୋଷାଧ୍ୟକ୍ଷ ରୂପେ ପ୍ରାରମ୍ଭରୁ ଦାୟିତ୍ୱ ଗ୍ରହଣ କରି ପତ୍ରିକାଟିକୁ କେବଳ ଆର୍ଥିକ ସ୍ୱଚ୍ଛଳତା ପ୍ରଦାନ କରି ନଥିଲେ ବରଂ ଏହାକୁ ପାଠକମାନଙ୍କ ନିକଟରେ ରୁଚିକର ଭାବେ ପରିବେଷଣରେ ଦାୟିତ୍ୱ ମଧ୍ୟ ନେଇଥିଲେ । ସମସାମୟିକ ଓଡ଼ିଶାରେ ଯେତେ ସବୁ ପତ୍ରପତ୍ରିକା ପ୍ରକାଶିତ ହେଉଥିଲା, ସେଗୁଡ଼ିକ ମଧ୍ୟରେ 'ସମ୍ବଲପୁର ହିତୈଷିଣୀ' ଆର୍ଥିକ ଦୃଷ୍ଟିରୁ କେବଳ ଆତ୍ମ ନିର୍ଭରଶୀଳ ଥିଲା । ଏହି ପତ୍ରିକାଟି ସାପ୍ତାହିକ ଭାବରେ ପ୍ରକାଶିତ ହେଉଥିଲେ ହେଁ ଏହାର କଳେବର ଅନ୍ୟାନ୍ୟ ମାସିକ ପତ୍ରିକାଠାରୁ ଅଧିକ ଥିଲା । ଏହି ସମୟ ମଧ୍ୟରେ ବାମଣ୍ଡାରୁ ପ୍ରକାଶିତ 'ଆଲୋଚନା' ଓ 'ଉତ୍କଳ ମଧୁପ' ପତ୍ରିକାଦ୍ୱୟର କୋଷାଧ୍ୟକ୍ଷ ରୂପେ ଦାୟିତ୍ୱ ସମ୍ପାଦନା କରିବା ସଙ୍ଗେ ସଙ୍ଗେ 'ଆଲୋଚନା' ପତ୍ରିକାର ସମ୍ପାଦକ ହୋଇଥିଲେ । କିନ୍ତୁ ଏହି ଦୁଇଟି ପତ୍ରିକାର ସ୍ଥାୟିତ୍ୱ ଥିଲା ସ୍ୱଳ୍ପକାଳ ।

ରାଜା ଫୁଲ୍ଲ ଦେବଙ୍କ ସାହିତ୍ୟିକ ପ୍ରତିଭାର ପ୍ରଭାବରେ ଜଳନ୍ଧର ସାହିତ୍ୟ ସାଧନା ଆରମ୍ଭ କରିଥିଲେ । ପତ୍ରପତ୍ରିକାଗୁଡ଼ିକ ସହିତ ନିବିଡ଼ ଭାବେ ସମ୍ପର୍କିତ ରହିବା ଯୋଗୁଁ ବହୁ ଲେଖକଙ୍କ ସହିତ ତାଙ୍କର ଯୋଗାଯୋଗ ସ୍ଥାପିତ ହୋଇପାରିଥିଲା । ଏହା ବ୍ୟତୀତ ସେତେବେଳେ ଉତ୍କଳ ତଥା ଉତ୍କଳ ବାହାରୁ ରାଜଅତିଥି ଭାବେ ବହୁ ବିଦ୍ୱାନ ବ୍ୟକ୍ତିଙ୍କୁ ନିମନ୍ତ୍ରଣ କରାଯାଉଥିଲା । ସେମାନଙ୍କ ରହଣି କାଳରେ ଜଳନ୍ଧର ହିଁ ସେମାନଙ୍କର ସମସ୍ତ ବ୍ୟବସ୍ଥା କରୁଥିଲେ । ସେମାନଙ୍କ ସାନ୍ନିଧ୍ୟ ମଧ୍ୟ ଜଳନ୍ଧରଙ୍କ ସାହିତ୍ୟିକ-ବ୍ୟକ୍ତିତ୍ୱକୁ ଅଧିକରୁ ଅଧିକ ଉନ୍ନତ କରିପାରିଥିଲା । ଜୀବନର ଶେଷ ପର୍ଯ୍ୟନ୍ତ ସାହିତ୍ୟ ପ୍ରତି ତାଙ୍କର ଆକର୍ଷଣରେ ଅବସାନ ହୋଇନଥିଲା । ୧୯୪୫ରେ ବାମଣ୍ଡା ରାଜ୍ୟର ଶିକ୍ଷା ପରାମର୍ଶଦାତା ଡକ୍ଟର ମାୟାଧର ମାନସିଂହଙ୍କ ସମ୍ପାଦନ ରେ ପ୍ରକାଶିତ 'ଶଙ୍ଖ' ମାସିକ ପତ୍ରିକା ପରବର୍ତ୍ତୀ କାଳରେ ଜଳନ୍ଧରଙ୍କ ସମ୍ପାଦନାରେ ପ୍ରକାଶିତ ହୋଇଥିଲା । ଏହି ପତ୍ରିକାଟି ଉଚ୍ଚକୋଟୀର ସମ୍ପାଦନା ପାଇଁ ୧୯୪୮ ମସିହା ପର୍ଯ୍ୟନ୍ତ ଓଡ଼ିଶାର ଅଗଣିତ ପାଠକ ସମାଜ ନିକଟରେ ଆଦୃତ ହୋଇ ପାରିଥିଲା ।

ସୁଢ଼ଳ ଦେବଙ୍କ ପରେ ତାଙ୍କର ପୁତ୍ର ସଚ୍ଚିଦାନନ୍ଦ ଦେବ ୧୯୦୩ ମସିହାରେ ସିଂହାସନ ଆରୋହଣ କଲେ । ପିତାଙ୍କ ସମୟର ଉନ୍ନତିମୂଳକ କାର୍ଯ୍ୟାବଳୀକୁ ଯଥାଯଥ ଆଗେଇ ନେବା ପାଇଁ ସେ ଯଥାସାଧ୍ୟ ପ୍ରୟାସ କରିଥିଲେ । ପିତାଙ୍କ ଭଳି ସେ ମଧ୍ୟ ଜଳନ୍ଧରଙ୍କ କାର୍ଯ୍ୟଦକ୍ଷତା ଉପରେ ଗଭୀର ଆସ୍ଥା ସ୍ଥାପନ କରିଥିଲେ । ସେଥିପାଇଁ ୧୯୦୩ ରେ ରାଜାଭିଷେକ ସମୟରେ ସେ ଜଳନ୍ଧର ଦେବଙ୍କ ମସ୍ତକରେ ଶାଢ଼ୀ ବାନ୍ଧି ତାହାଙ୍କୁ ରାଜକୀୟ ସମ୍ମାନରେ ସମ୍ମାନିତ କରିଥିଲେ । ଫଳତଃ ସେହି ଦିନଠାରୁ ସେ ବାମଣ୍ଡା ରାଜ୍ୟର ଦେଓ୍ୱାନ ଭାବେ କାର୍ଯ୍ୟନିର୍ବାହ କଲେ ଓ ଅବସର ନେବା ପର୍ଯ୍ୟନ୍ତ ପ୍ରଶାସନକୁ ସକ୍ରିୟ ତଥା ଜନାଭିମୁଖୀ ରଖି ପାରିଥିଲେ ।

ସୁଢ଼ଳ ଦେବଙ୍କ ଭଳି ଜଳନ୍ଧର ଏକାଧିକବାର ଅନ୍ୟାନ୍ୟ ସ୍ଥାନକୁ ଭ୍ରମଣରେ ଯାଉଥିଲେ । ଏହି ସବୁ ଭ୍ରମଣର ଉଦ୍ଦେଶ୍ୟ ଥିଲା ଭିନ୍ନ । ସେ ଯେଉଁ ସବୁ ସ୍ଥାନକୁ ଯାଉଥିଲେ, ସେସବୁ ସ୍ଥାନରେ ଜନଜୀବନକୁ ସେ ଗଭୀର ଭାବେ ଅନୁଧ୍ୟାନ କରୁଥିଲେ । ଯେଉଁ ସବୁ ଆଧୁନିକ ସୁଯୋଗ ସୁବିଧା ଅନ୍ୟାନ୍ୟ ସ୍ଥାନମାନଙ୍କରେ ଦେଖୁଥିଲେ, ସେଗୁଡ଼ିକ କିପରି ତାଙ୍କ ନିଜ ରାଜ୍ୟରେ କାର୍ଯ୍ୟକାରୀ ହୋଇପାରିବ, ତାହାର ଉପାୟ ମଧ୍ୟ ଅନ୍ୱେଷଣ କରୁଥିଲେ । ତାଙ୍କରି ଉଦ୍ୟମ ଫଳରେ ବାମଣ୍ଡାରେ ବହୁ ଆଧୁନିକ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠିତ ହୋଇଥିଲା । ରାଜଧାନୀ ଦେବଗଡ଼ରେ ବିଦ୍ୟୁତାଲୋକ ତଥା ପାନୀୟ ଜଳ ଯୋଗାଣର ବ୍ୟବସ୍ଥା କରାଯାଇଥିଲା । ରାଜଧାନୀର ପାରିପାର୍ଶ୍ୱିକ ସୌନ୍ଦର୍ଯ୍ୟ ବୃଦ୍ଧି ନିମନ୍ତେ ବିଭିନ୍ନ ସ୍ଥାପତ୍ୟ ତଥା ଭାସ୍କର୍ଯ୍ୟର ଶ୍ରେଷ୍ଠ ପ୍ରତିକୃତିଗୁଡ଼ିଏ ମଧ୍ୟ ଉନ୍ମୋଚିତ ହୋଇଥିଲା । ଏହା ବ୍ୟତୀତ ପ୍ରମୋଦ ଉଦ୍ୟାନରେ ବହୁ ପ୍ରକାରର ଫଳ ପୁଷ୍ପାଦି ବୃକ୍ଷରୋପଣ ମଧ୍ୟ ତାଙ୍କରି ପରିକଳ୍ପନାନୁସାରେ କରାଯାଇଥିଲା ।

ଜଣେ ସମ୍ବେଦନଶୀଳ ପ୍ରଶାସକ ଭାବରେ ସେ ବାମଣ୍ଡାର ଜନସାଧାରଣଙ୍କ ନିକଟରେ ଆଦୃତ ଥିଲେ । ତାହାଙ୍କ ସମ୍ବେଦନଶୀଳତା ତଥା ମାନବିକ ମୂଲ୍ୟବୋଧର କାହାଣୀ ଆଜି ମଧ୍ୟ ବାମଣ୍ଡାର ଲୋକ ମୁଖରେ ପ୍ରଚଳିତ ରହିଛି । ସେତେବେଳର ବାମଣ୍ଡା ରାଜ୍ୟର ପ୍ରଜାମାନଙ୍କ ମଧ୍ୟରୁ ଅଧିକାଂଶ ଆଦିବାସୀ ଶ୍ରେଣୀର ଥିଲେ । ଫଳତଃ ବହୁ ସମୟରେ ସେମାନଙ୍କର ଆର୍ଥିକ ସଙ୍କଟ ଦେଖା ଦେଉଥିଲା । ଏଣୁ ଅର୍ଥାଭାବରୁ ଯଦି କୌଣସି ପ୍ରଜାର ଶୁଦ୍ଧି ନିଷ୍ପାଦ ହୋଇ ନ ପାରିବାର ଖବର ସେ ପାଉଥିଲେ, ତେବେ ତତ୍‌କ୍ଷଣାତ୍ ରାଜାଙ୍କ ଅନୁମତି ନିଆଯାଇ ରାଜକୋଷରୁ ସମସ୍ତ ପ୍ରକାର ଆର୍ଥିକ ସହାୟତା ପ୍ରଦାନ କରାଯାଉଥିଲା । କାହାରି ପୁତ୍ର କନ୍ୟାର ବିବାହ କାଳରେ ଯଦି ଆର୍ଥିକ ଅସୁବିଧା ହେଉଥିଲା, ସେ ଜଳନ୍ଧରଙ୍କୁ ଜଣାଇଲେ, ତତ୍‌କ୍ଷଣାତ୍ ସାହାଯ୍ୟ ମିଳିବାରେ କୌଣସି ଅସୁବିଧା ହେଉ ନଥିଲା । ଫଳତଃ ରାଜକୀୟ ପ୍ରଶାସନ ପ୍ରତି ସାଧାରଣ ପ୍ରଜାମାନଙ୍କର ଯେଉଁ ସ୍ୱାଭାବିକ ଭୟ ଥାଏ,

ତାହା ବାମଣ୍ଡାରେ ପ୍ରାପ୍ତ ନଥିଲା । ପ୍ରଜାମାନଙ୍କର ଦୃଢ଼ ଆତ୍ମପ୍ରତ୍ୟୟ ଉଦ୍ରେକ କରାଇବା ଦିଗରେ ଜଳନ୍ଧର ହିଁ ବାମଣ୍ଡାର ପ୍ରଶାସନକୁ ସର୍ବ ପ୍ରକାର ଦିଗ୍‌ଦର୍ଶନ ଦେଉଥିଲେ ।

କୃଷି କାର୍ଯ୍ୟ ପ୍ରତି ଜଳନ୍ଧରଙ୍କର ଅହେତୁକ ଆକର୍ଷଣ ଥିଲା । କୃଷି ସମ୍ପର୍କୀୟ ବହୁ ତଥ୍ୟର ଅଧିକାରୀ ସେ ଥିଲେ । ପ୍ରତ୍ୟକ୍ଷ ଭାବରେ ସେ ନିଜର କୃଷି କ୍ଷେତକୁ ତଦାରଖ କରୁଥିଲେ । ପ୍ରଜାମାନେ ବିଭିନ୍ନ ସମୟରେ କୃଷି ସମ୍ପର୍କୀୟ ପରାମର୍ଶ ପାଇଁ ମଧ୍ୟ ତାହାଙ୍କଠାକୁ ଆସୁଥିଲେ । କୃଷକମାନଙ୍କ ଜ୍ଞାତବ୍ୟ ବିଷୟକୁ ଗ୍ରହଣ କରି ସେ କେତେକ ଲେଖା ମଧ୍ୟ ପ୍ରକାଶ କରିଥିଲେ । ୧୯୩୬ ମସିହାରେ ଲିଖିତ 'କୃଷି' ପ୍ରବନ୍ଧରେ ସେ ବିଭିନ୍ନ ଫସଲର ଚାଷ ପ୍ରଣାଳୀ ସମ୍ବନ୍ଧୀୟ ବହୁ ଜ୍ଞାତବ୍ୟ ବିଷୟ ପ୍ରଦାନ କରିଥିଲେ । ରାଜବଂଶରେ ଜନ୍ମ ହୋଇଥିଲେ ହେଁ ନିଜକୁ ସେ କୃଷକ ବୋଲି କହିବାକୁ ଗର୍ବ ବୋଧ କରୁଥିଲେ । ତାହାଙ୍କ ଭାଷାରେ—"ମୁଁ ଚଷା, ଏଣୁ ଚଷା ଦେଖିଲେ ସେ ବଡ଼ ଲୋକ ହେଉ ବା ସାମାନ୍ୟ ମୂଲିଆ ହେଉ, ତା ସଙ୍ଗରେ ଦୁଇ ପଦ କଥା ହେବାର ଅଭ୍ୟାସ ଅଛି । ଏତଦ୍ୱାରା ଅନେକ ଶିକ୍ଷା ମିଳେ ।"* କୃଷି ଓ କୃଷୀ ପ୍ରତି ତାହାଙ୍କର ଉଦାର ମନୋଭାବର ପରିଚୟ ଏହି ଉକ୍ତିରୁ ହିଁ ମିଳିଥାଏ ।

ଜଳନ୍ଧର ଦେବଙ୍କ ବ୍ୟକ୍ତିତ୍ୱ ଥିଲା ବହୁମୁଖୀ । ପ୍ରଶାସନର ଗୁରୁଦାୟିତ୍ୱ ବହନ କରିଥିଲେ ମଧ୍ୟ ସେ ଧୀରସ୍ଥିର ଭାବେ କର୍ତ୍ତବ୍ୟ କର୍ମ କରିଯାଉଥିଲେ ଏବଂ ତାହାରି ମଧ୍ୟରେ ଜ୍ଞାନପିପାସୁ ମନର ପରିତୃପ୍ତି ପାଇଁ ବହୁ ଗ୍ରନ୍ଥ, ପତ୍ରପତ୍ରିକା ଆଦି ଅଧ୍ୟୟନ କରୁଥିଲେ । ତାଙ୍କର ବହୁଦର୍ଶିତାର ପ୍ରମାଣ ତାହାଙ୍କ ବିଭିନ୍ନ ବିଷୟକ ଲେଖାଗୁଡ଼ିକ ମଧ୍ୟରେ ସ୍ପଷ୍ଟ ଭାବରେ ପ୍ରତିଫଳିତ । ଭାଷା, ସାହିତ୍ୟ, ଧର୍ମ ଧାରଣା, କୃଷି, ଜ୍ୟୋତିର୍ବିଜ୍ଞାନ ତଥା ଆଧ୍ୟାତ୍ମିକ ସମ୍ବନ୍ଧରେ ବିଭିନ୍ନ ଗ୍ରନ୍ଥରୁ ସେ ବହୁ ତଥ୍ୟ ଓ ତତ୍ତ୍ୱ ସଂଗ୍ରହ କରିଥିଲେ ।

ଅସୀମ ପାଣ୍ଡିତ୍ୟ, ରାଜକୀୟ କ୍ଷମତା ଓ ସୁଖ ସୁବିଧାର ଅଧିକାରୀ ଥାଇ ମଧ୍ୟ ତାଙ୍କର ବ୍ୟବହାର ଥିଲା ଆମାୟିକ । ସବୁଶ୍ରେଣୀର ଲୋକଙ୍କ ସହିତ ଅତି ସହଜରେ ସେ ମିଶି ପାରୁଥିଲେ । ସ୍ୱତନ୍ତ୍ର ଓଡ଼ିଶା ଗଠନ ହେବା ପରେ ଅବସ୍ଥିତି ଦୃଷ୍ଟିରୁ ସମ୍ବଲପୁର ଅଞ୍ଚଳର ଗୁରୁତ୍ୱ ଭିନ୍ନ ପ୍ରକାରର ଥିଲା । ଏଣୁ ତତ୍କାଳୀନ ଓଡ଼ିଶାର ନେତୃସ୍ଥାନୀୟ ବ୍ୟକ୍ତିମାନେ ଏହି ଅଞ୍ଚଳରେ ଓଡ଼ିଶାର ସ୍ୱାର୍ଥରକ୍ଷା ପାଇଁ ବାରମ୍ବାର ସେଠାକୁ ଯାଉଥିଲେ । ସେମାନଙ୍କ ମଧ୍ୟରୁ ଅନେକ ଜଳନ୍ଧରଙ୍କ ଆତିଥ୍ୟ ଓ ସହାୟତା

* ( କୃଷି ପ୍ରବନ୍ଧରୁ ଉଦ୍ଧୃତ )

ପାଉଥିଲେ । ତାଙ୍କର ବାସଭବନ ପ୍ରାୟ ଓଡ଼ିଶାର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କଦ୍ୱାରା ଅଧିକାଂଶ ସମୟରେ ମୁଖରିତ ହେଉଥିଲା ।

ଜଣେ ସୁଦକ୍ଷ ବକ୍ତା ଭାବରେ ସେ ସମସାମୟିକ ବହୁ ସାରସ୍ୱତ ସମାବେଶକୁ ଆମନ୍ତ୍ରିତ ହେଉଥିଲେ । 'ଉତ୍କଳ ସାହିତ୍ୟ ସମାଜର' ଅଷ୍ଟାବିଂଶ ଅଧିବେଶନରେ ସଭାପତିରୂପେ ଆମନ୍ତ୍ରିତ ହୋଇ ସେ ଯେଉଁ ଅଭିଭାଷଣ ପ୍ରଦାନ କରିଥିଲେ, ସେଥିରେ ତାହାଙ୍କ ସ୍ପଷ୍ଟବାଦିତା ତଥା ସମସାମୟିକ ଓଡ଼ିଆ ସାହିତ୍ୟର ସମସ୍ୟାଗୁଡ଼ିକ ପ୍ରତି ସଚେତନତା ପ୍ରକାଶ ପାଇଥିଲା । ବାଣପଦାର ଶିଶୁ ସାହିତ୍ୟ ସମାଜର ଉଦ୍‌ଘାଟନୀ ଭାଷଣ ତାଙ୍କର ଅତି ଭାବଗର୍ଭକ ଥିଲା । ଏହା ବ୍ୟତୀତ ଓଡ଼ିଶା ବାହାରକୁ ମଧ୍ୟ ସେ ଏକାଧିକବାର ବକ୍ତାରୂପେ ଆମନ୍ତ୍ରିତ ହୋଇଥିଲେ ।

ସ୍ପଷ୍ଟବାଦିତା ତାହାଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ବିଶିଷ୍ଟ ବିଭବ । ସତ୍ୟ ପ୍ରକାଶରେ ସେ କେବେ କୁଣ୍ଠିତ ହେଉ ନଥିଲେ । ବ୍ୟକ୍ତିଗତ ସମ୍ପର୍କ ଅପେକ୍ଷା ସତ୍ୟ ପ୍ରକାଶକୁ ସେ ଅଧିକ ଗୁରୁତ୍ୱ ଦେଉଥିଲେ । ଏହି ଗୁଣ ପାଇଁ ସେ କେବେ କେବେ ଅପ୍ରୀତିକର ପରିସ୍ଥିତିର ମଧ୍ୟ ସମ୍ମୁଖୀନ ହେଉଥିଲେ । ପ୍ରତ୍ୟେକ ସାହିତ୍ୟିକ ନିର୍ଭୀକ ହେବା ଉଚିତ ବୋଲି ମତ ଦେଇ ସେ କହିଥିଲେ ଯେ—ନିର୍ଭୀକ ଭାବରେ ମନୋଗତ ଭାବ ପ୍ରକାଶ କଲେ ସାହିତ୍ୟର ପ୍ରକୃତ ବିକାଶ ସାଧିତ ହୁଏ । କବି ଓ ଲେଖକ ଆନ୍ତରିକ ଭାବ ବ୍ୟକ୍ତ କରିବାକୁ ବାଧା ପ୍ରାପ୍ତ ହୋଇ ଯେଉଁ କବିତା ବା ରଚନା ଲେଖନ୍ତି ତାହା କେବଳ ସାହିତ୍ୟିକ ପ୍ରବଞ୍ଚନା । ଏପରି ଲେଖା ପାଠ କରି ପରବର୍ତ୍ତୀ କାଳର ଲୋକେ ଜାତୀୟ ବିକାଶର ପରିଚୟ ପାଇବା କଳ୍ପନା ମଧ୍ୟ ବିଡ଼ମ୍ବନା । ବ୍ୟକ୍ତିଗତ ବନ୍ଧୁତ୍ୱ ଅପେକ୍ଷା ସତ୍ୟ ପ୍ରକାଶକୁ ସେ ଅଧିକ ଗୁରୁତ୍ୱ ଦେଉଥିବା ଗୋଟିଏ ଉଦାହରଣ ଏଠାରେ ପ୍ରଦତ୍ତ ହେଲେ ଅବାନ୍ତର ହେବ ନାହିଁ । ବାମଣ୍ଡା ରାଜପରିବାର ସହିତ କବିବର ରାଧାନାଥଙ୍କ ସମ୍ପର୍କ ଥିଲା ଅତି ଘନିଷ୍ଠ । ସେ ବାରମ୍ବାର ବାମଣ୍ଡା ଭ୍ରମଣରେ ଯାଉଥିଲେ ଏବଂ ଜଳନ୍ଧର ଦେବ ସର୍ବଦା ତାହାଙ୍କ ସହିତ ରହୁଥିଲେ । ସେହି ଦୃଷ୍ଟିରୁ ରାଧାନାଥ ଓ ତାଙ୍କ ପୁତ୍ର ଶଶି ଭୂଷଣ ରାୟ ଥିଲେ ଜଳନ୍ଧର ଦେବଙ୍କ ଘନିଷ୍ଠ ବନ୍ଧୁ, କିନ୍ତୁ ଯେତେବେଳେ ଶଶିଭୂଷଣ ଲଘୁ ସାହିତ୍ୟ ଓ ବଳିଷ୍ଠ ସାହିତ୍ୟ ପ୍ରସଙ୍ଗରେ ଓଡ଼ିଶାର ବିକାଶୋନ୍ମୁଖୀ ସାହିତ୍ୟିକ ପ୍ରତିଭାଗୁଡ଼ିକୁ ନିମ୍ନ ଦୃଷ୍ଟିରେ ଦେଖିଲେ, ସେତେବେଳେ ଶଶିଭୂଷଣଙ୍କ ସେହି ମନୋଭାବର ପ୍ରତିବାଦ କରି ଜଳନ୍ଧର ଲେଖିଥିଲେ—"ଶଶିବାବୁ ୬୦ ବର୍ଷର କଥା ସାହିତ୍ୟର ଆଲୋଚନା ମଧ୍ୟରେ କେବଳ ୫/୬ ଖଣ୍ଡ ପୁସ୍ତକର ନାମ ଲେଖି ଉତ୍କଳର ସାହିତ୍ୟିକ ଅଧୋଗତିର ଚିତ୍ର ଅଙ୍କନ କରିବାର ଚେଷ୍ଟା କରିଅଛନ୍ତି । ରାଧାନାଥ ଉତ୍କଳର ନୂତନ ସାହିତ୍ୟ ପନ୍ଥାର ଜଣେ ପଥପ୍ରଦର୍ଶକ, ଏହା ସମସ୍ତେ ସ୍ୱୀକାର କରନ୍ତି, ମାତ୍ର କଥା ସାହିତ୍ୟର ଆଦର୍ଶ ନୁହନ୍ତି,

ଏହା ସମସ୍ତେ ସ୍ୱୀକାର କରିବେ । ୧୮୮୭ ରୁ ୧୯୦୭ ମଧ୍ୟରେ ରାଧାନାଥ ଇଚ୍ଛାମୟୀ ଯୁବା ନାମକ ଗୋଟିଏ ମାତ୍ର ଗଳ୍ପ ରଚନା କରିଥିଲେ । ଏଥିରୁ ଜଣାପଡ଼େ ଯେ ସେ କଥାସାହିତ୍ୟ ପ୍ରତି ଉଦାସୀନ ଥିଲେ । ଏ ଦୃଷ୍ଟିରୁ ତାଙ୍କୁ କେହି କଥାସାହିତ୍ୟର ପୁରୋହିତ ବୋଲି ସ୍ୱୀକାର କରିବେ ନାହିଁ । ଶଶିବାବୁଙ୍କ କଥାସାହିତ୍ୟ ଲେଖକ ତାଲିକା ସହିତ ଆଧୁନିକ କଥାସାହିତ୍ୟ ଲେଖକଙ୍କ ତାଲିକା ମିଳାଇ ସମାଲୋଚନା କରିବାର ଅବସର ନାହିଁ ; ମାତ୍ର ଦୁଃଖର କଥା ଏହି ଯେ, ଶଶିବାବୁ ଯୁବକମାନଙ୍କ ଲେଖା ମଧ୍ୟରୁ ବିଚିତ୍ର ଚମକପ୍ରଦ ଘଟଣାମୂଳକ କଥା ସାହିତ୍ୟର ଗୋଟିଏ ନାମ ମଧ୍ୟ ପାଇଲେ ନାହିଁ । ତେବେ ଶଶିବାବୁଙ୍କ ବିବେଚନାରେ ଏ ଦେଶ ଅଧଃପତିତ ସାହିତ୍ୟିକଶୂନ୍ୟ, ବିବେଚକଶୂନ୍ୟ, ପୁରୁଣାଦଳଙ୍କ ଅବସାନ ଉପ୍ତରୁ ନବ୍ୟଦଳ ସାହିତ୍ୟର ରାଜ୍ୟଟାକୁ ବଙ୍ଗୋପସାଗରରେ ଭସାଇ ଦେବାର ଚେଷ୍ଟାରେ ଅଛନ୍ତି ।" ଯାହାକୁ ସେ ଅଯୌକ୍ତିକ ତଥା ଜାତିସ୍ୱତାର ପରିପନ୍ଥୀରୂପେ ବିଚାର କରୁଥିଲେ ସେ ବିଷୟରେ ସେ ସ୍ପଷ୍ଟମତ ପ୍ରଦାନକରୁଥିଲେ । ବରିଷ୍ଠ ସାହିତ୍ୟିକ ଗୋପାଳଚନ୍ଦ୍ର ପ୍ରହରାଜଙ୍କ 'ନନାଙ୍କ ବସ୍ତାନି'ରେ ପ୍ରଯୁକ୍ତ ବହୁ ଆଞ୍ଚଳିକ ଶବ୍ଦର ବିରୋଧ କରି ସେ ଲେଖିଥିଲେ—'ନାନାଙ୍କ ବସ୍ତାନି'ରେ ବ୍ୟବହୃତ କେତୋ ଗ୍ରାମ୍ୟଭାଷା ଲେଖକର ଲେଖାନୈପୁଣ୍ୟକୁ ପଢ଼ିବାକୁ ପ୍ରୀତିପଦ ହେଲେ ମଧ୍ୟ ପ୍ରକୃତ ପକ୍ଷରେ ଅନ୍ୟ ପ୍ରଦେଶରେ ଲୋକଙ୍କର ବୋଧଗମ୍ୟ ହୁଏ ନାହିଁ ; ଯେଉଁମାନଙ୍କ ନିମନ୍ତେ ଲେଖା, ସେମାନେ ଯେବେ ବୁଝିବାକୁ ଅକ୍ଷମ, ତେବେ ସେ ଲେଖାର ପ୍ରୟୋଜନ କ'ଣ ? ପର ନିମନ୍ତେ ସାହିତ୍ୟର ସୃଷ୍ଟି । ଶବ୍ଦ କାଠିନ୍ୟ ଯେମନ୍ତ କାବ୍ୟର ଦୋଷ, ଗ୍ରାମ୍ୟତା ବିଶେଷତଃ ଅପ୍ରଯୋଜ୍ୟ ଗ୍ରାମ୍ୟତା ତତୋଽଧିକ ଆଲଙ୍କାରିକ ଦୋଷ ଅଟେ । ଓଡ଼ିଶାର ପ୍ରତ୍ୟେକ ପ୍ରଦେଶର ଲେଖକମାନେ ଯେବେ ଆପଣା ଆପଣା ପ୍ରଦେଶର ବା ଗ୍ରାମରେ ବ୍ୟବହୃତ ଶବ୍ଦ ବ୍ୟବହାର କରି ଦେଶପ୍ରେମିକତା ଦେଖାଇବାକୁ ଯତ୍ନଶୀଳ ହୁଅନ୍ତି, ତାହେଲେ ଅଚିରେ ଯେ ଓଡ଼ିଆ ସାହିତ୍ୟର ଅଧୋଗତି ହେବ, ଏଥିରେ କି ସନ୍ଦେହ କରିବାର ଅବସର ଅଛି ।" ଯେତେବେଳେ ଓଡ଼ିଶାର ରାଜନୈତିକ ଅବସ୍ଥିତି ଯାହାଥିଲି, ସେହି ପରିପ୍ରେକ୍ଷୀରେ ଲେଖକଙ୍କର ଏହି ମନ୍ତବ୍ୟ ଯଥାର୍ଥ ଥିଲି । କାରଣ ଓଡ଼ିଶା ଖଣ୍ଡବିଖଣ୍ଡିତ ହୋଇ ବିଭିନ୍ନ ପ୍ରଦେଶର ଅଂଶ ବିଶେଷରୂପେ ରହିଥିବାରୁ ଆଞ୍ଚଳିକତାର ପ୍ରଭାବରେ ବିଭିନ୍ନ ଅଞ୍ଚଳର ଭାଷା ମଧ୍ୟରେ ବହୁ ତାରତମ୍ୟ ଥିଲି । ସାହିତ୍ୟ ମଧ୍ୟରେ ଆଞ୍ଚଳିକ ଭାଷାର ପ୍ରୟୋଗ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ସମୂହର ଏକୀକରଣ ପ୍ରକ୍ରିୟାର ପରିପନ୍ଥୀ ଥିଲି ।

୧୯୨୪ରେ ଜଗନ୍ନାଥ ଦେବ ରାଜକାର୍ଯ୍ୟରୁ ଅବସର ଗ୍ରହଣ ପରେ ଯେଉଁ କେତେକ କାର୍ଯ୍ୟ ପ୍ରତି ବିଶେଷ ଆଗ୍ରହ ପ୍ରକାଶ କରିଥିଲେ ତାହା ମଧ୍ୟରେ ସାହିତ୍ୟ

ସାଧନା, ଜଗନ୍ନାଥ ବଲ୍ଲଭ ପ୍ରେସ ଓ ସଚ୍ଚିଦାନନ୍ଦ ପାଠାଗାରର ପରିଚାଳନା ପ୍ରାଧାନ୍ୟ ପାଇଥିଲା । ଓଡ଼ିଶାରେ ସମସାମୟିକ କାଳରେ ଯେଉଁ ଦୁଇ ତିନୋଟି ପାଠାଗାର ପୁସ୍ତକ ତଥା ପତ୍ରପତ୍ରିକା ଯୋଗୁ ସମୃଦ୍ଧ ଥିଲା, ସଚ୍ଚିଦାନନ୍ଦ ପାଠାଗାର ସେ ମଧ୍ୟରୁ ଅନ୍ୟତମ । ଓଡ଼ିଶାରେ ପ୍ରକାଶିତ ପ୍ରାୟ ସମସ୍ତ ପତ୍ରପତ୍ରିକା ସେଠାକୁ ଆସୁଥିଲା ଏବଂ ଜଳନ୍ଧର ସେସବୁକୁ ଭଲଭାବେ ଅଧ୍ୟୟନ କରୁଥିଲେ । ଏହି ପାଠାଗାର ପରିଚାଳନାର ମୁଖ୍ୟ ଦାୟିତ୍ୱ ବସ୍ତୁତଃ ତାଙ୍କରି ଉପରେ ନିର୍ଭର କରୁଥିଲା । ସେ ଏହି ପାଠାଗାରରେ ଗଚ୍ଛିତଥିବା ବିଭିନ୍ନ ପୁସ୍ତକ ଅଧ୍ୟୟନରେ ଅଧିକାଂଶ ସମୟ ବ୍ୟୟ କରୁଥିଲେ । ପୁସ୍ତକ ପାଠ ଓ ବିଭିନ୍ନ ପତ୍ରପତ୍ରିକା ପାଇଁ ଲେଖିବା ଥିଲା ତାହାଙ୍କର ଦୈନନ୍ଦିନ କର୍ମ ଭିତରେ ମୁଖ୍ୟ । ୧୯୫୬ରେ ତାହାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ସେ ନିରଳସ ଭାବେ ଲେଖନୀ ଚାଳନା କରିଯାଇଥିଲେ । ସାହିତ୍ୟର ବିଭିନ୍ନ ବିଭାଗରେ ସେ ଲେଖନୀ ଚାଳନା କରିଥିଲେ ମଧ୍ୟ ସମାଲୋଚନା ସାହିତ୍ୟରେ ତାହାଙ୍କ ପରାକାଷ୍ଠା ପ୍ରଦର୍ଶିତ ହୋଇଛି । ତାହାଙ୍କ ରଚନାବଳୀ ମଧ୍ୟରେ ପ୍ରାୟ ତିରିଶଗୋଟି ଉନ୍ନତ ପ୍ରବନ୍ଧ, ବାରଗୋଟି କ୍ଷୁଦ୍ରଗଳ୍ପ, ଗୋଟିଏ ନାଟକ, ଦୁଇଗୋଟି ଏକାଙ୍କିକା, ତିନିଚାରିଗୋଟି କବିତା ଏବଂ କେତେକ ଭ୍ରମଣ କାହାଣୀ ଅନ୍ତର୍ଭୁକ୍ତ ।

ସ୍ୱାଧୀନତା ପରେ ସେ ପ୍ରତ୍ୟକ୍ଷ ରାଜନୀତିରେ ଅଂଶ ଗ୍ରହଣ କରିଥିଲେ । ୧୯୪୯ରୁ ୧୯୫୨ ମସିହା ପର୍ଯ୍ୟନ୍ତ ସେ ଓଡ଼ିଶା ରାଜ୍ୟ ବିଧାନ ସଭାର ସଦସ୍ୟ ଭାବେ ନିର୍ବାଚିତ ହୋଇଥିଲେ । ଏହି ସ୍ୱଳ୍ପ କାଳ ଭିତରେ ସେ ତାଙ୍କର ବହୁ ଲୋକହିତକର କାର୍ଯ୍ୟ ନିମନ୍ତେ ଦେବଗଡ଼ର ଲୋକମାନଙ୍କ ନିକଟରେ ଚିରସ୍ମରଣୀୟ ହୋଇ ରହିଛନ୍ତି । ୧୯୫୬ ମସିହା ଅକ୍ଟୋବର ୨୭ ତାରିଖ ଗୋଷ୍ଠାଷ୍ଟମୀ ତିଥିରେ ଏହି ମହାନ ବ୍ୟକ୍ତିଙ୍କର ଜୀବନାବସାନ ହୋଇଥିଲା । ପତ୍ନୀ ସତ୍ୟଭାମାଦେବୀଙ୍କର ମୃତ୍ୟୁ ହେଲା ୧୯୫୭ ମସିହାରେ ।

ଜଳନ୍ଧର ଦେବଙ୍କ ପାରିବାରିକ ଜୀବନ ଥିଲା ଆଦର୍ଶମୟ । ସେ ପାଞ୍ଚ ପୁତ୍ର ଓ ସାତ କନ୍ୟାର ପିତା ଥିଲେ । ପିତାଙ୍କ ଆଦର୍ଶମୟ ବ୍ୟକ୍ତିତ୍ୱରେ ପ୍ରଭାବିତ ହୋଇ ତାହାଙ୍କ ପୁତ୍ରଗଣ ମଧ୍ୟ ନିଜ ନିଜ ଜୀବନରେ ପ୍ରତିଷ୍ଠିତ ହୋଇ ପାରିଥିଲେ । ଜ୍ୟେଷ୍ଠପୁତ୍ର ଶଶିଭୂଷଣ ଦେବ ଜିଲ୍ଲା ମାଜିଷ୍ଟ୍ରେଟ୍, ଦ୍ୱିତୀୟ ପୁତ୍ର ହରିପ୍ରସାଦ ଦେବ ଉପଜିଲ୍ଲାପାଳ ଓ କର୍ମଯୋଗାଣ ବିଭାଗର ନିର୍ଦ୍ଦେଶକ, ତୃତୀୟ ପୁତ୍ର ହରପ୍ରସାଦ ଦେବ ବିଧାନସଭା ସଦସ୍ୟ ଓ ରାଜ୍ୟ ପବ୍ଲିକ୍‌ସର୍ଭିସ କମିଶନର ସଭ୍ୟ, ଚତୁର୍ଥ ପୁତ୍ର ଗିରିଜାଶଙ୍କର ଦେବ ବନ୍ୟସଂରକ୍ଷକ ଓ ପଞ୍ଚମ ପୁତ୍ର ମଞ୍ଜୁଶ୍ରୀ ଦେବ ଖଣି ପ୍ରଭୃତି ବ୍ୟବସାୟ କାର୍ଯ୍ୟରେ ପ୍ରତିଷ୍ଠିତ ହୋଇଥିଲେ ।

ଜଳନ୍ଧରଙ୍କ ସାହିତ୍ୟକୃତି ମଧ୍ୟରୁ ବିବାହ ବିଚାର (୧୯୨୮) ଓ 'ତାଳଚେରର ରାଜବଂଶ' (୧୯୫୧) ପୁସ୍ତକାକାରରେ ପ୍ରକାଶିତ ହୋଇଥିଲା । ଅନ୍ୟାନ୍ୟ ରଚନାଗୁଡ଼ିକ ବିଭିନ୍ନ ପତ୍ରପତ୍ରିକାରେ ବିକ୍ଷିପ୍ତ ଭାବେ ପ୍ରକାଶିତ । ତାହାଙ୍କ ସାହିତ୍ୟ କୃତିଗୁଡ଼ିକ ହେଉଛି—

**ପ୍ରବନ୍ଧ ସାହିତ୍ୟ**

ବୈଦିକ ଓ ପୌରାଣିକ ସନ୍ତକାହିତ (୧୯୧୩), ଭଗବଦ୍ ଗୀତା (୧୯୧୫), ଆମ୍ଭମାନଙ୍କର ଯାନ ଓ ଅସ୍ତ୍ରଶସ୍ତ୍ର (୧୯୧୬), ରାମାୟଣ (୧୯୧୬), ସ୍ୱଗତ (୧୯୧୭), ସାହିତ୍ୟ ଓ ଜାତି (୧୯୨୯), ଜ୍ୟୋତିର୍ବିଦ୍ୟାର ଜନ୍ମ (୧୯୩୧), ବୁଦ୍ଧଦେବଙ୍କ ଜନ୍ମସ୍ଥାନ (୧୯୩୨), ବେଦ ଓ ହିନ୍ଦୁ ଧର୍ମ (୧୯୩୨), ରାଜା ରାମମୋହନ (୧୯୩୪). ବର୍ଣ୍ଣ ଓ ଜାତି ବିଚାର (୧୯୩୪), ନର ଓ ନାରୀ (୧୯୩୬), ଭୂତ ଓ ପ୍ରେତ (୧୯୧୫), କଠିନ ସମସ୍ୟା (୧୯୩୪), ଭାରତ ଇତିହାସ, ମନ (୧୯୩୫), ମରଣରେ ବି ମୋହର ଜୀବନ ସାଥୀ (୧୯୩୫), ଭୂମିକମ୍ପ (୧୯୩୬), ଜିଜ୍ଞାସା (୧୯୩୬), ନକ୍ଷତ୍ର, ଭାଷା, ଲଘୁ ସାହିତ୍ୟ ଓ ବଳିଷ୍ଠ ସାହିତ୍ୟ ସମ୍ବନ୍ଧେ ଦୁଇପଦର କଥା (୧୯୩୨), ଉତ୍କଳ ସାହିତ୍ୟ ସମାଜର ବାର୍ଷିକ ଅଧିବେଶନରେ ସଭାପତିଙ୍କ ଅଭିଭାଷଣ (୧୯୩୩), କଟକରେ ସାହିତ୍ୟ ଚର୍ଚ୍ଚା (୧୯୩୩), ସାହିତ୍ୟିକ ଅଭିଭାଷଣ (୧୯୩୫), ରାଧାନାଥଙ୍କ କାବ୍ୟରେ ନାରୀ (୧୯୩୫), ମେଘଦୂତ, ଶିକ୍ଷା ଓ ସମାଲୋଚନା (୧୯୩୫), ମହାଭାରତ (୧୯୧୬), ଯୁଦ୍ଧ ଓ ଗୀତା କୁଣଲେଶ୍ୱର କାର୍ତ୍ତିକେୟ (୧୯୩୬), ସୃଷ୍ଟି (୧୯୩୭), ନାରାୟଣ (୧୯୩୭), ଅଙ୍କୁର ଅନାଦି କାଳରୁ ଅଛି କି ? (୧୯୩୮), ମୂଢ଼ ଧାର୍ମିକତା (୧୯୩୮), ଆର୍ଯ୍ୟ ସଂସ୍କୃତିର କି ଏହି ପରିଣତି (୧୯୩୮), ସତ୍ୟଂ ପରଂ ଧୀମହି, ବୃକ୍ଷ (୧୯୩୯), ବ୍ରହ୍ମଜାଲ (୧୯୪୮) ଓ ଅନ୍ୟାନ୍ୟ ବହୁ ପ୍ରବନ୍ଧ ।

**ଗଳ୍ପ ସାହିତ୍ୟ**

ଗୋଟିଏ କଥା (୧୯୧୫), ମିଥ୍ୟା ଅଭିଯୋଗ (୧୯୨୧), ଅତିଥି ସତ୍କାର (୧୯୨୮), ଭିନ୍ନ ଗତି ଭିନ୍ନ ମତି (୧୯୨୮), ଗୌଷ୍ଠ ଓ କାହ୍ନୁ (୧୯୨୮), ଆଇ ନାରୁଣୀ (୧୯୨୯), ଘନିଷ୍ଠତା କ୍ଷଣସ୍ଥାୟୀ (୧୯୨୯), ମନ୍ତ୍ରରାମର ମୃତ୍ୟୁ (୧୯୩୧), ବିବାହ ଭୋଜି (୧୯୩୨), ପ୍ରକୃତିର ପ୍ରତିଶୋଧ (୧୯୩୩), ସନ୍ତାନ ସ୍ନେହ (୧୯୩୨), ମୁକ୍ତିର ଉପାୟ (୧୯୩୩), ଅଶ୍ରୁଧାରା (୧୯୩୫), ଏହା କି ଆତ୍ମହତ୍ୟା (୧୯୩୫), ଗରିବର ମୃତ୍ୟୁକାଳୀନ ଚିନ୍ତା (୧୯୩୮), ମେଷ ବଳି (୧୯୩୩), ଭିକ୍ଷୁକ ସଭା (୧୯୩୫), ପତିତପାବନ ତୋର (୧୯୨୯), ସାନ୍ଧ୍ୟ ଗଗନ (୧୯୨୯) ।

## ନାଟକ ଓ ଏକାଙ୍କିକା

ଉଦୟ ସିଂହ (ଐତିହାସିକ ନାଟକ), ବିଚ୍ଛେଦ (ଏକାଙ୍କିକା ୧୯୩୨), ରାଣା ସିଂହଙ୍କର ମହା ପ୍ରୟାଣ (ଏକାଙ୍କିକା ୧୯୩୩) ।

## ଭ୍ରମଣ ସାହିତ୍ୟ

ଡାଏରୀର କିୟଦଂଶ (୧୯୧୧) ।

## କବିତା

ମେଘ ସ୍ତବନା, ସ୍ୱର୍ଗତ ବିଶ୍ୱନାଥ କରଙ୍କ ପ୍ରତି, ଅସ୍ପୃଶ୍ୟା ।



# ପ୍ରାବନ୍ଧିକ ଜଳନ୍ଧର

ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରିଥିଲେ ମଧ୍ୟ ଜଣେ ସଫଳ ପ୍ରାବନ୍ଧିକ ଭାବେ ସେ ମୁଖ୍ୟତଃ ସ୍ୱୀକୃତ ପାଇଛନ୍ତି । ରାଜକୁମାର ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କରୁଥିବା ସମୟରୁ ଓଡ଼ିଆ ସାହିତ୍ୟରେ ଉଚ୍ଚ କୋଟୀର ପ୍ରବନ୍ଧ-ସାହିତ୍ୟର ଅଭାବ ସମ୍ବନ୍ଧରେ ସେ ସଚେତନ ହୋଇଥିଲେ । 'ବାମଣ୍ଡା ଛାତ୍ର ସମିତି ସଭା'ର ସମ୍ପାଦକ ଭାବେ ସେ ଏହି ଅଭାବର ଦୂରୀକରଣ ପାଇଁ ତାହାଙ୍କ ଶିକ୍ଷକମାନଙ୍କଠାରୁ ଆବଶ୍ୟକୀୟ ପେରଣା ମଧ୍ୟ ପାଇଥିଲେ । ସେହି ଅବସ୍ଥାରୁ ସେ ନିଜେ ଏ ଦିଗରେ ସଫଳତା ଅର୍ଜନ ପାଇଁ ନିଜକୁ ପସ୍ତୁତ କରୁଥିଲେ । ତାହାର ଫଳ ସ୍ୱରୂପ ପରବର୍ତ୍ତୀ କାଳରେ ତାହାଙ୍କ ଲେଖନୀରୁ ବହୁ ଉଚ୍ଚ କୋଟୀର ଜ୍ଞାନଗର୍ଭକ ପ୍ରବନ୍ଧମାନ ସୃଷ୍ଟି ହୋଇ ପାରିଥିଲା ।

ଆଧୁନିକ ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଆଲୋଚନା କାଳରେ ସ୍ୱର୍ଗତଃ ବିଶ୍ୱନାଥ କରଙ୍କ ନାମ ଆଦ୍ୟ ସ୍ମରଣୀୟ । ଓଡ଼ିଆ ପ୍ରବନ୍ଧ ସାହିତ୍ୟର ସେ ଥିଲେ ପ୍ରାଣ ପ୍ରତିଷ୍ଠାତା । ଊନବିଂଶ ଶତାବ୍ଦୀର ଶେଷ ପାଦରେ ତାହାଙ୍କଦ୍ୱାରା ପ୍ରବର୍ତ୍ତିତ ରଚନାଶୈଳୀ ପରବର୍ତ୍ତୀ କାଳର ପ୍ରାବନ୍ଧିକମାନଙ୍କ ଅନୁସରଣୀୟ ହୋଇଥିଲା । ବସ୍ତୁତଃ ପ୍ରବନ୍ଧ ରଚନା କ୍ଷେତ୍ରରେ ସେ ଯେଉଁ ନୂତନ ଦିଗନ୍ତର ସଙ୍କେତ ପ୍ରଦାନ କଲେ, ତାହା ହିଁ ଆଧୁନିକ ଓଡ଼ିଆ ପ୍ରବନ୍ଧର ରୂପକଳା କହିଲେ ଅତ୍ୟୁକ୍ତି ହେବନାହିଁ । ସେଗୁଡ଼ିକ ମୁଖ୍ୟତଃ ଚିନ୍ତାଧର୍ମୀ ଓ ଭାବଗର୍ଭକ ଥିଲେ ମଧ୍ୟ ତାହାର ରଚନାଶୈଳୀ ଥିଲା ସରଳ ଓ ଭାଷା ଥିଲା ସ୍ୱାଭାବିକ । ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଯେଉଁ ସବୁ ଓଡ଼ିଆ ପ୍ରାବନ୍ଧିକଙ୍କ ଆବିର୍ଭାବ ଘଟିଥିଲା, ସେମାନେ ଆଙ୍ଗିକ ତଥା ଆତ୍ମିକରେ ବିଶ୍ୱନାଥ କରଙ୍କ ପଦାଙ୍କ ଅନୁସରଣ କରିଥିଲେ । ପ୍ରାବନ୍ଧିକ ଜଳନ୍ଧର ଦେବ ଏମାନଙ୍କ ମଧ୍ୟରୁ ଅନ୍ୟତମ ଥିଲେ ।

ଛାତ୍ର ଜୀବନର ପରିସମାପ୍ତି ପରେ ପରେ ଜଳନ୍ଧର ଦେବ 'ସମ୍ବଲପୁର ହିତୈଷିଣୀ', 'ଆଲୋଚନା' 'ଉତ୍କଳ ମଧୁପ' ପ୍ରଭୃତି ପତ୍ରପତ୍ରିକା ସହିତ ଘନିଷ୍ଠ

ଭାବେ ସଂପୃକ୍ତ ହୋଇଥିଲେ । ସେ ସମୟରେ ଓଡ଼ିଆ ସାହିତ୍ୟର ପାରିପାର୍ଶ୍ୱିକ ଅବସ୍ଥା ସମ୍ପର୍କରେ ସେ ସଂପୂର୍ଣ୍ଣ ଅବହିତ ଥିଲେ । ବିଭିନ୍ନ ପତ୍ରପତ୍ରିକାରେ ଗଳ୍ପ କବିତା ତୁଳନାରେ ଖୁବ୍ କମ୍ ସଂଖ୍ୟକ ଉତ୍କୃଷ୍ଟ ଗଦ୍ୟ ରଚନା ପ୍ରକାଶିତ ହେଉଥିଲା । ଉନ୍ନତ ଗଦ୍ୟ ରଚନା ନିମନ୍ତେ ଯେଉଁ ଗଭୀର ଅଧ୍ୟୟନ ଓ ଏକନିଷ୍ଠ ଅଧ୍ୟବସାୟ ଆବଶ୍ୟକ, ସେଥିରେ ସେ ନିରବଚ୍ଛିନ୍ନ ଭାବେ ଲାଗିଥିଲେ । ଉତ୍କୃଷ୍ଟ ପ୍ରବନ୍ଧ ରଚନା ପାଇଁ ସେ ଯେପରି ନେପଥ୍ୟରେ ନିଜକୁ ଦୀର୍ଘ ଦିନ ଧରି ପ୍ରସ୍ତୁତ କରୁଥିଲେ ।

ତାଙ୍କର ପ୍ରବନ୍ଧଗୁଡ଼ିକର ବିଷୟବସ୍ତୁ ଥିଲା ବ୍ୟାପକ । ବିଭିନ୍ନ ବିଷୟର ତାତ୍ତ୍ୱିକ ଆଲୋଚନା କରିବା ସଙ୍ଗେ ସଙ୍ଗେ ସମସାମୟିକ ଓଡ଼ିଆ ସାହିତ୍ୟର ଗତି ଓ ପ୍ରକୃତି ସମ୍ପର୍କରେ ନିଜସ୍ୱ ମତ ଓ ମନ୍ତବ୍ୟକୁ ନିର୍ଭୀକ ଭାବରେ ପ୍ରକାଶ କରୁଥିଲେ । ଗତାନୁଗତିକତାକୁ ଅନ୍ଧବିଶ୍ୱସିତ ଭାବେ ସେ ଗ୍ରହଣ କରୁନଥିଲେ । ପ୍ରତିଟି ବିଷୟକୁ ବିଭିନ୍ନ ଦୃଷ୍ଟିକୋଣରୁ ବିଚାର ବିଶ୍ଳେଷଣ କରିବା ନିମନ୍ତେ ସେ ବହୁ ଗ୍ରନ୍ଥ ଅଧ୍ୟୟନ କରୁଥିଲେ । ତେଣୁ ତାହାଙ୍କ ପ୍ରବନ୍ଧଗୁଡ଼ିକରୁ ବହୁ ପାଠିତାର ପ୍ରମାଣ ମିଳିଥାଏ ।

ଭୌଗୋଳିକ ଅବସ୍ଥିତି ଦୃଷ୍ଟିରୁ ବାମଣ୍ଡା ସେ ସମୟରେ ହିନ୍ଦୀ ଭାଷାଭାଷୀ ଅଞ୍ଚଳ ସହିତ ସଂଯୁକ୍ତ ଥିଲା । ଏଣୁ ସେସବୁ ଅଞ୍ଚଳରେ ବ୍ୟବହୃତ ଓଡ଼ିଆ ଭାଷା ଉପରେ ହିନ୍ଦୀ ଭାଷାର ପ୍ରଭାବ ଥିଲା ସ୍ୱାଭାବିକ । ହିନ୍ଦୀଭାଷାର ବହୁଳ ବ୍ୟବହାରକୁ ଲକ୍ଷ୍ୟରଖି ସମ୍ବଲପୁର ଅଞ୍ଚଳରେ ହିନ୍ଦୀଭାଷାକୁ ଓଡ଼ିଆ ପରିବର୍ତ୍ତେ ପ୍ରଚଳନ କରାଇବା ପାଇଁ ମଧ୍ୟ ପ୍ରୟାସ କରାଯାଇଥିଲା । କିନ୍ତୁ ଜଳନ୍ଧର ଦେବଙ୍କ ରଚନା ସମୂହର ଭାଷାରେ ହିନ୍ଦୀର ପ୍ରଭାବ ପରିଲକ୍ଷିତ ହୁଏ ନାହିଁ । ଓଡ଼ିଆ ଭାଷାର ମାର୍ଜିତ ଓ ଶୁଦ୍ଧରୂପକୁ ସେ ତାହାଙ୍କ ରଚନାବଳୀରେ ବ୍ୟବହାର କରିଥିଲେ । ସାହିତ୍ୟରେ ପ୍ରଯୁକ୍ତ ଭାଷା ସମ୍ପର୍କରେ ତାହାଙ୍କର ନିର୍ଦ୍ଦିଷ୍ଟ ଅଭିମତ ଥିଲା । ଆଞ୍ଚଳିକ ଭାଷାର ପ୍ରୟୋଗକୁ ସାହିତ୍ୟରେ ସେ ସମର୍ଥନ କରୁନଥିଲେ । କଥିତ ଭାଷାର ଆଞ୍ଚଳିକତାକୁ ସେ ସ୍ୱୀକାର କରୁଥିଲେ ମଧ୍ୟ ସାହିତ୍ୟ ମଧ୍ୟରେ ଏହି ଆଞ୍ଚଳିକଭାଷା ପ୍ରୟୋଗକୁ ଦୃଢ଼ଭାବରେ ବିରୋଧ କରୁଥିଲେ । କାରଣ ସାହିତ୍ୟ ସାର୍ବଜନୀନ । ଆଞ୍ଚଳିକଭାଷାର ପ୍ରୟୋଗ ଫଳରେ ସାହିତ୍ୟର ପାଠକ ସଂଖ୍ୟା ସୀମିତ ହୋଇଯାଏ । ଏଣୁ ବୃହତ୍ତର ସ୍ୱାର୍ଥ ସାଧନ ସମ୍ଭବ ହୁଏନାହିଁ । ସେ ସମୟରେ ଗୋପାଳ ଚନ୍ଦ୍ର ପ୍ରହରାଜ ତାହାଙ୍କ ରଚନା ମଧ୍ୟରେ ଆଞ୍ଚଳିକ ଶବ୍ଦକୁ ବହୁଳଭାବେ ବ୍ୟବହାର କରୁଥିବାରୁ ତାହାର ପ୍ରତିବାଦ ସ୍ୱରୂପ ଜଳନ୍ଧର ଦେବ 'ଭାଷା' ଶୀର୍ଷକ ପ୍ରବନ୍ଧରେ ଲେଖିଥିଲେ—"ବର୍ତ୍ତମାନ ଦେଖାଯାଏ ଯେ ଅନେକ ଲେଖକ ଗ୍ରାମ୍ୟଭାଷା ବ୍ୟବହାର କରିବାକୁ କୁଣ୍ଠିତ ନୁହନ୍ତି । ସେମାନଙ୍କ ବ୍ୟବହୃତ ଗ୍ରାମ୍ୟଶବ୍ଦ ଯେବେ ସମସ୍ତ ଉତ୍କଳବାସୀଙ୍କର ବୋଧଗମ୍ୟ ହୁଅନ୍ତା, ତେବେ ଗୋଟାକେତେ ଶବ୍ଦ ବ୍ୟବହାରରେ କ୍ଷତି ନଥାନ୍ତା ; ମାତ୍ର ସେମାନଙ୍କର

ବୁଝିବା ଉଚିତ ଯେ ଲେଖକର ଗ୍ରାମ୍ୟଶବ୍ଦ ସବୁ ସ୍ଥଳରେ ପାଠକର ଗ୍ରାମ୍ୟଶବ୍ଦ ନୁହେଁ । ପାଠକ ସେ ଗ୍ରାମ୍ୟ ଶବ୍ଦର ଅର୍ଥ ବୁଝିବାକୁ କିଂକର୍ତ୍ତବ୍ୟବିମୂଢ଼ ହେବା କଥା—ଯେହେତୁ ଏ ଦେଶରେ ଗ୍ରାମ୍ୟ ଶବ୍ଦକୋଷ ନାହିଁ । "ନାନାଙ୍କ ବସ୍ତାନି"ରେ ବ୍ୟବହୃତ କଟକୀ ଗ୍ରାମ୍ୟଭାଷା ଲେଖକର ଲେଖା-ନୈପୁଣ୍ୟରୁ ପଢ଼ିବାକୁ ପ୍ରୀତିପ୍ରଦ ହେଲେ ମଧ୍ୟ ପ୍ରକୃତ ପକ୍ଷରେ ଅନ୍ୟ ପ୍ରଦେଶର ଲୋକଙ୍କର ବୋଧଗମ୍ୟ ହୁଏନାହିଁ । ଯେଉଁମାନଙ୍କ ନିମନ୍ତେ ଲେଖା, ସେମାନେ ଯେବେ ବୁଝିବାକୁ ଅକ୍ଷମ, ତେବେ ସେ ଲେଖାର ପ୍ରୟୋଜନ କ'ଣ ? ପର ନିମନ୍ତେ ସାହିତ୍ୟର ସୃଷ୍ଟି । ଶବ୍ଦକାଠିଣ୍ୟ ଯେମନ୍ତ କାବ୍ୟର ଦୋଷ, ଗ୍ରାମ୍ୟତା ବିଶେଷତଃ ଅପ୍ରଯୋଜ୍ୟ ଗ୍ରାମ୍ୟତା ତତୋଽଧିକ ଆଲଙ୍କାରିକ ଦୋଷ ଅଟେ । ଓଡ଼ିଶାର ପ୍ରତ୍ୟେକ ପ୍ରଦେଶର ଲେଖକମାନେ ଯେବେ ଆପଣା ଆପଣା ପ୍ରଦେଶର ବା ଗ୍ରାମର ବ୍ୟବହୃତ ଶବ୍ଦ ବ୍ୟବହାର କରି ଦେଶପ୍ରେମିକତା ଦେଖାଇବାକୁ ଯତ୍ନଶୀଳ ହୁଅନ୍ତି, ତାହାହେଲେ ଅଚିରେ ଯେ ଓଡ଼ିଆ ସାହିତ୍ୟର ଅଧୋଗତି ହେବ ଏଥିରେ କି ସନ୍ଦେହ କରିବାର ଅବସର ଅଛି ?"

ଜଳନ୍ଧରଙ୍କ ରଚନାବଳୀରୁ ବିଭିନ୍ନ ବିଷୟରେ ତାହାଙ୍କ ଗଭୀର ଜ୍ଞାନର ପରିଚୟ ମିଳେ । ସଂସ୍କୃତରେ ତାହାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ଇଂରାଜୀ, ହିନ୍ଦୀ ଓ ବଙ୍ଗଳା ପ୍ରଭୃତି ଭାଷାରେ ମଧ୍ୟ ତାହାଙ୍କର ପର୍ଯ୍ୟାପ୍ତ ଜ୍ଞାନ ଥିବାର ପ୍ରମାଣ ମିଳେ । ବେଦ ଓ ସଂସ୍କୃତର ଅନ୍ୟାନ୍ୟ ପୁରାଣ ଶାସ୍ତ୍ରକୁ ସେ ଭଲଭାବରେ ଅଧ୍ୟୟନ କରିଥିଲେ । ବେଦର ବିଭିନ୍ନ ବ୍ୟାଖ୍ୟା ପାଠକରି ଯେଉଁସବୁ ବ୍ୟାଖ୍ୟାରେ ସେ ସନ୍ତୁଷ୍ଟ ହୋଇନଥିଲେ, ସେ ବିଷୟରେ ଯୁକ୍ତିମୂଳକ ମତାମତ ପ୍ରଦାନ କରୁଥିଲେ । ମହାଭାରତ, ରାମାୟଣ, ଓ ଗୀତା ପ୍ରଭୃତି ଗ୍ରନ୍ଥଗୁଡ଼ିକ ଉପରେ ଗତାନୁଗତିକ ଭାବରେ ଯେଉଁ ଲୋକବିଶ୍ୱାସ ପ୍ରଚଳିତ ଥିଲା, ତାହା ବିରୁଦ୍ଧରେ ସେ କଠୋର ସମାଲୋଚନାମାନ ପ୍ରକାଶ କରିଥିଲେ । ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ଦ୍ୱାରା ବେଦର ଯେଉଁ ବ୍ୟାଖ୍ୟା ପ୍ରଦତ୍ତ ହୋଇଥିଲା, ସେଥିର ବହୁସ୍ଥଳରେ ଜଳନ୍ଧର ଯୌକ୍ତିକତାର ଅଭାବ ଦର୍ଶାଇଛନ୍ତି ।

ଜଳନ୍ଧରଙ୍କ ପ୍ରବନ୍ଧଗୁଡ଼ିକର ସାମଗ୍ରିକ ମୂଲ୍ୟାୟନ ଫଳରେ କେବଳ ତାହାଙ୍କ ବହୁମୁଖୀ ପ୍ରତିଭାର ସମ୍ୟକ ପରିଚୟ ମିଳିପାରିବ ।

**ଭାଷା**

ଊନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀର ପ୍ରାରମ୍ଭ କାଳରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ କେତେକ ଲେଖକ ଆଞ୍ଚଳିକ ଭାଷା ପ୍ରୟୋଗ କରିବାକୁ ପ୍ରୟାସ କରିଥିଲେ । ସେ ସମୟରେ ଓଡ଼ିଶାର ସ୍ୱତନ୍ତ୍ର ସ୍ଥିତି ନଥିଲା । ମଧ୍ୟପ୍ରଦେଶ, ବିହାର, ବଙ୍ଗଳା ତଥା ମାନ୍ଦ୍ରାଜ ପ୍ରଦେଶରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଖଣ୍ଡବିଖଣ୍ଡିତ

ହୋଇ ରହିଥିଲା । ଫଳରେ କଥିତ ଓଡ଼ିଆ ଭାଷାରେ ଆଞ୍ଚଳିକ ବୈଷମ୍ୟ ଅଧିକ ଥିଲା । ଏହି ପରିପ୍ରେକ୍ଷୀରେ ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶ କ୍ଷେତ୍ରରେ ଆଞ୍ଚଳିକ ଭାଷାର ବ୍ୟବହାର ସାହିତ୍ୟର ପ୍ରସାର କ୍ଷେତ୍ରରେ ପ୍ରତିକୂଳ ପରିବେଶ ସୃଷ୍ଟି କରିବା ସ୍ୱାଭାବିକ ଥିଲା । ସମସାମୟିକ ରାଜନୈତିକ ପରିସ୍ଥିତିରେ ଓଡ଼ିଶାର ସାମୂହିକ ବିକାଶ ନିମନ୍ତେ ବିଭିନ୍ନ ଅଞ୍ଚଳର ଓଡ଼ିଆ ଭାଷାଭାଷୀମାନଙ୍କ ମଧ୍ୟରେ ଐକ୍ୟ ଓ ସାମଞ୍ଜସ୍ୟ ରକ୍ଷା ଏକାନ୍ତ ଆବଶ୍ୟକ ଥିଲା । ତେଣୁ ଓଡ଼ିଆ ଜାତିର ବୃହତ୍ତର ସ୍ୱାର୍ଥସାଧନ ନିମନ୍ତେ ଜଳଧର ସାହିତ୍ୟରେ ଗ୍ରାମ୍ୟ ଭାଷାର ପ୍ରୟୋଗକୁ ବିରୋଧ କରି ଏହି କ୍ଷୁଦ୍ର ପ୍ରବନ୍ଧଟି ରଚନା କରିଥିଲେ । ତାହାଙ୍କ ମତରେ—ଓଡ଼ିଆ ଭାଷାର ଗ୍ରାମ୍ୟ ଓ ପ୍ରାଦେଶିକତା ବେଶୀ, ଯେହେତୁ ଓଡ଼ିଶା ଗୋଟିଏ କ୍ଷୁଦ୍ର ପ୍ରଦେଶ ନୁହେଁ, ତାହାଛଡ଼ା ଅରଣ୍ୟ ଓ ଗିରିସଙ୍କୁଳ ଏ ପ୍ରଦେଶର ଗତିପଥ ସବୁ ନିର୍ବାଧ ଓ ସୁଗମ ନଥିଲା । ଏଣୁ ପ୍ରତ୍ୟେକ କ୍ଷୁଦ୍ର ଭୂମି ବିଭାଗ ମଧ୍ୟ ଭାଷାର ସ୍ୱାତନ୍ତ୍ର୍ୟ ରକ୍ଷା କରିଅଛି । ଏହା ବୁଝାଇବା ନିଷ୍ପ୍ରୟୋଜନ । କିନ୍ତୁ ଏତାଦୃଶ୍ ବାଧା ସତ୍ତ୍ୱେ ବିଶୁଦ୍ଧ ଓଡ଼ିଆ ଭାଷା ଗଠିତ ହୋଇଅଛି ଓଡ଼ିଶାର କୃତୀପୂର୍ବ ପ୍ରାଚୀନ କବିମାନଙ୍କ ଦ୍ୱାରା । ତାହା ପାଠ କଲାବେଳେ ପ୍ରତ୍ୟେକ ଓଡ଼ିଆ ପ୍ରାଦେଶିକ ଓ ଗ୍ରାମ୍ୟଭାଷାକୁ ଭୁଲିଯାଆନ୍ତି ଏବଂ ନିଜେ ରଚନା କଲାବେଳେ ପୂର୍ବ କବିମାନଙ୍କର ପଦାଙ୍କ ଅନୁସରଣ କରି ଗ୍ରାମ୍ୟ ଶବ୍ଦ ତ୍ୟାଗକରି ଶକ୍ତ୍ୟାନୁସାରେ କାବ୍ୟ ଲେଖନ୍ତି । ପ୍ରତ୍ୟେକ ଲେଖାରେ ଗ୍ରାମ୍ୟ ଓ ପ୍ରାଦେଶିକ ଶବ୍ଦ ଯେ ନଥାଏ, ଏପରି ନୁହେଁ । ମାତ୍ର ଜଣକର ପ୍ରାଦେଶିକ ଓ ଗ୍ରାମ୍ୟ କଥା ଯେପରି ଅନ୍ୟ ପ୍ରଦେଶର ବା ଗ୍ରାମର ଲୋକ ବୁଝିବା ଅସମ୍ଭବ ହୁଏ, କାବ୍ୟ ବୁଝିବାକୁ ସେପରି ଅସମ୍ଭବ ହୁଏ ନାହିଁ । × × ×"

ତାହାଙ୍କ ମତରେ ଭାଷା ବ୍ୟବଧାନ ସାହିତ୍ୟ ପ୍ରଗତିର ଅନ୍ତରାୟ ହୋଇଥାଏ । ଭାଷାର ବ୍ୟବଧାନ ଘଟେ ଗ୍ରାମ୍ୟତା ଦୋଷରୁ । ତେଣୁ ସାହିତ୍ୟରେ ଅଧିକ ଗ୍ରାମ୍ୟ ଶବ୍ଦ ପ୍ରୟୋଗକୁ ସେ ବିରୋଧ କରିଥିଲେ ।

### ସାହିତ୍ୟ ଓ ଜାତି

୧୯୨୯ ମସିହାର 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ ଏହି ପ୍ରବନ୍ଧଟି ସମସାମୟିକ ଓଡ଼ିଆ ସାହିତ୍ୟର ଗତି ଓ ପ୍ରବୃତ୍ତି ଉପରେ ଆଧାରିତ । ଗୋଟିଏ ଜାତିର ବିକାଶ ପଥରେ ସାହିତ୍ୟର ମଧ୍ୟ ଉଲ୍ଲେଖଯୋଗ୍ୟ ଅବଦାନ ଥାଏ, ଏହା ସମସ୍ତେ ସ୍ୱୀକାର କରନ୍ତି । କିନ୍ତୁ ଯେଉଁ ସାହିତ୍ୟରେ ସାହିତ୍ୟିକମାନଙ୍କର ସ୍ୱାଧୀନ ଚିନ୍ତାର ନିର୍ଭୀକ ପରିପ୍ରକାଶ ଘଟି ନଥାଏ, ସେ ସାହିତ୍ୟ କେବେହେଲେ ଜାତିକୁ ନୂତନ ଦିଗ୍‌ଦର୍ଶନ ଦେବାକୁ ସମର୍ଥ ହୋଇପାରେ ନାହିଁ । ପରାଧୀନ ଭାରତବର୍ଷରେ ଆଞ୍ଚଳିକ ଭାଷା ସାହିତ୍ୟର ବିକାଶ ପଥରେ ଥିବା ବିଭିନ୍ନ ବାଧାବିଘ୍ନ ସମ୍ପର୍କରେ ସଂକ୍ଷିପ୍ତ ସୂଚନା

ପ୍ରଦାନ କରି ପ୍ରାବନ୍ଧିକ ଓଡ଼ିଆ ସାହିତ୍ୟର ଦୁରବସ୍ଥା ସମ୍ପର୍କରେ ଆଲୋଚନା କରିଥିଲେ । ତାହାଙ୍କ ମତରେ ଅତୀତରେ ଜ୍ଞାନାର୍ଜ୍ଜନର ଲକ୍ଷ୍ୟ ନେଇ ବିଦ୍ୟାଭ୍ୟାସ କରାଯାଉଥିଲା । ଏହାହିଁ ଥିଲା ଭାରତୀୟ ସଂସ୍କୃତିର ପାରମ୍ପରିକ ଆଦର୍ଶ । କିନ୍ତୁ ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତିର ପ୍ରସାର ଫଳରେ ଏହି ପ୍ରତିଷ୍ଠିତ ଆଭିମୁଖ୍ୟ ପରିବର୍ତ୍ତିତ ହେଲା । ଚାକିରି ହିଁ ହେଲା ବିଦ୍ୟାଭ୍ୟାସର ଏକମାତ୍ର ଉଦ୍ଦେଶ୍ୟ । ସେତେବେଳେ ଇଂରାଜୀ ଭାଷାର ଅଧ୍ୟୟନ-ଦ୍ୱାରା ଚାକିରି ପ୍ରାପ୍ତି ସୁଗମ ଥିଲା । ତେଣୁ ଆଞ୍ଚଳିକ ଭାଷା ସାହିତ୍ୟର ଅଧ୍ୟୟନ ଅବହେଳିତ ହେଉଥିଲା । କେବଳ ଏତିକି ନୁହେଁ ଯେଉଁ କେତେଜଣ ଆଞ୍ଚଳିକ ଭାଷାସାହିତ୍ୟ ଚର୍ଚ୍ଚା କରୁଥିଲେ, ସେମାନେ ନିର୍ଭୀକ ଚିନ୍ତା ଓ ଚେତନାର ପରିପ୍ରକାଶ ଅପେକ୍ଷା ଅଧିକ ଅନୁକରଣ ଓ ଅନୁସରଣରେ ବ୍ରତୀ ଥିଲେ । ଏହିସବୁ ଦୋଷଦୁର୍ବଳତାକୁ ଲକ୍ଷ୍ୟ କରି ପ୍ରାବନ୍ଧିକ ଏହି ପ୍ରବନ୍ଧରେ ଉଲ୍ଲେଖ କରିଥିଲେ—"ଆଜି କାଲି ପ୍ରାୟ ସମସ୍ତେ ଇଂରାଜୀ ସାହିତ୍ୟସେବୀ । କେହି କେହି ଦୟାପରବଶ ହୋଇ ମାତୃଭାଷାର ଉନ୍ନତିକଳ୍ପେ ଶୁଭ ଦୃକ୍‌ପାତ କଲେ ସୁଦ୍ଧା ଏବଂ ମାତୃଭାଷାର ଅଙ୍ଗ ପୁଷ୍ଟି କରିବାକୁ କିଞ୍ଚିତ୍ ଚେଷ୍ଟା କଲେ ସୁଦ୍ଧା ଅଧିକାଂଶ ସ୍ଥଳରେ ଭାବ ଓ ଧାରଣ ସଂପୂର୍ଣ୍ଣ ଅନୁକରଣ ବୋଲି ପ୍ରକାଶ ପାଏ ।"

ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଯେଉଁ କେତେଜଣ ଲେଖକ ଓଡ଼ିଆ ସାହିତ୍ୟ ଚର୍ଚ୍ଚାରେ ମନୋନିବେଶ କରିଥିଲେ, ସେମାନେ ସମସ୍ତେ ପ୍ରାୟ ଥିଲେ ଇଂରାଜୀ ଶିକ୍ଷାପ୍ରାପ୍ତ । ସେମାନଙ୍କ ରଚନା ସମୂହରେ ନିଜସ୍ୱଭାବ ଓ ଭାବନା ତୁଳନାରେ ଅନୁକରଣରେ ମାତ୍ରା ଅଧିକ ଥିଲା । ଏହି ଧାରା ସମ୍ପର୍କରେ ଗଭୀର କ୍ଷୋଭ ପ୍ରକାଶକରି ଜଳନ୍ଧର ଲେଖିଥିଲେ—"ଓଡ଼ିଆ ଭାଷାର ସମ୍ୟକ ଉନ୍ନତିର ଅନ୍ତରାୟ ଅନେକ । ଏହା ଅର୍ଥକରୀ ନୁହେଁ । ଅର୍ଥାତ୍ କେବଳ ଓଡ଼ିଆ ପାଠ ପଢ଼ି ପେଟ ପୋଷିବା ଆଶା ନାହିଁ । ଅର୍ଥକରୀ ବିଦ୍ୟା ଇଂରାଜୀ । × × × ପାଶ୍ଚାତ୍ୟ ଜାତି ଆମ ଦେଶରୁ ଧନ ଓ ଜ୍ଞାନ ଉପାର୍ଜ୍ଜନକରନ୍ତି ତାଙ୍କ ଦେଶର ଓ ତାଙ୍କ ମାତୃଭାଷାର ଉନ୍ନତି ନିମନ୍ତେ । ଆଉ ଆମ୍ଭେମାନେ ବିଦେଶୀ ଜ୍ଞାନ ଉପାର୍ଜ୍ଜନ କରୁ ନିଜ ଦେଶର ଧନ ଶୋଷଣ କରି ପରଦେଶକୁ ବଢ଼ାଇଦେବା ନିମନ୍ତେ ।" ନିଜ ଜାତି ଓ ଦେଶର ମଙ୍ଗଳ ନିମନ୍ତେ ସେ ସାହିତ୍ୟିକମାନଙ୍କୁ ନିର୍ଭୀକ ଓ ସ୍ପଷ୍ଟବାଦୀ ହେବାପାଇଁ ପରାମର୍ଶ ଦେଇଥିଲେ । ତାଙ୍କ ମତରେ— "ଯୁଦ୍ଧ, ବିପ୍ଳବ, ଭୂମିକମ୍ପ, ଦୁର୍ଭିକ୍ଷ ଦ୍ୱାରା ସାହିତ୍ୟ କ୍ଷତିଗ୍ରସ୍ତ ହେବାର କେବେ ଶୁଣାନାହିଁ । ଏସବୁ ଯେଣୁ ସାହିତ୍ୟ । ସାହିତ୍ୟ କ୍ଷତିଗ୍ରସ୍ତ ହୁଏ ଚରିତ୍ରହୀନ, ଆତ୍ମଗୋପନକାରୀ ଲେଖକର ଲେଖନୀ ଚାଳନା ଦ୍ୱାରା । ସାହିତ୍ୟ କ୍ଷତିଗ୍ରସ୍ତ ହୁଏ ସ୍ୱାଧୀନ ଚିନ୍ତାର ଅଭାବରୁ । କୃପଣପ୍ରୋଥିତ ଗୁପ୍ତଧନ ଯେପରି ଲୋକଙ୍କର ଉପକାରକୁ ଆସିପାରେ ନାହିଁ, ସାହିତ୍ୟିକର ଆତ୍ମଗତ ଗୋପନ ସାହିତ୍ୟର ଉପକାରକୁ ଆସିପାରେ ନାହିଁ ।"

ଲଘୁ ସାହିତ୍ୟ ଓ ବଳିଷ୍ଠ ସାହିତ୍ୟ ସମ୍ବନ୍ଧେ ଦୁଇଟିର କଥା

ପ୍ରବୀଣ ଓ ନବୀନଙ୍କ ମଧ୍ୟରେ ବିରୋଧାଭାସ ସବୁ କ୍ଷେତ୍ରରେ ପରିଲକ୍ଷିତ ହୋଇଥାଏ । ସାହିତ୍ୟକ୍ଷେତ୍ରରେ ବେଳେ ବେଳେ ଏହା ତୀବ୍ରତର ହୋଇ ଅପ୍ରୀତିକର ପରିବେଶ ସୃଷ୍ଟି କରିଥାଏ । ୧୯୨୦ ମସିହା ପରେ ପରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସବୁଜ ଗୋଷ୍ଠୀର ଯେଉଁ କେତେଜଣ ତରୁଣ ସାହିତ୍ୟିକ ଦୃଢ଼ ନୂତନତ୍ୱର ପରୀକ୍ଷା ନିରୀକ୍ଷା କରିବାକୁ ପ୍ରୟାସ କରିଥିଲେ, ସମସାମୟିକ କେତେକ ପ୍ରବୀଣ ଲେଖକ ତାହାକୁ ଶୁଭ ଦୃଷ୍ଟିରେ ଦେଖୁନଥିଲେ । ଏହି ପ୍ରବୀଣଗଣ ଗତାନୁଗତିକତାକୁ ସମର୍ଥନ କରି ନବୀନ ସାହିତ୍ୟିକମାନଙ୍କ ପ୍ରତି ଆକ୍ଷେପାତ୍ମକ ମତ ଓ ମନ୍ତବ୍ୟ ପ୍ରଦାନ କରୁଥିଲେ । ଏହିଭଳି କେତେକ କଟୂ ମନ୍ତବ୍ୟଯୁକ୍ତ ଦୁଇଟି ଲେଖା ପ୍ରାବନ୍ଧିକ ଶଶିଭୂଷଣ ରାୟଙ୍କ ଦ୍ୱାରା 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶ ପାଇଥିଲା । "ଲଘୁ ସାହିତ୍ୟ ଓ ବଳିଷ୍ଠ ସାହିତ୍ୟ' ଶୀର୍ଷକ ଏହି ଦୀର୍ଘ ରଚନାର ପ୍ରତିବାଦସ୍ୱରୂପ ସବୁଜ ଗୋଷ୍ଠୀର ଅନ୍ୟତମ ସଦସ୍ୟ ହରିହର ମହାପାତ୍ର ମଧ୍ୟ ପ୍ରବୀଣ ଲେଖକମାନଙ୍କୁ ଆକ୍ଷେପ କରି ଗୋଟିଏ ଲେଖା ପ୍ରକାଶ କରିଥିଲେ । ଏହି ବାଦପ୍ରତିବାଦ ସମ୍ପର୍କରେ ନିଜସ୍ୱ ମତ ପ୍ରଦାନ କରିବା ଲକ୍ଷ୍ୟରେ ପ୍ରାବନ୍ଧିକ ଜଳନ୍ଧର ୧୯୩୨ ମସିହାରେ 'ସହକାର' ପତ୍ରିକାରେ ଏହି ଆଲୋଚନାଟି ପ୍ରକାଶ କରିଥିଲେ । ଏଥିରେ ସେ ଶଶୀଭୂଷଣଙ୍କ ମତର ତୀବ୍ର ବିରୋଧ କରିଥିଲେ । ସାହିତ୍ୟରେ ନୂତନତ୍ୱର ପ୍ରତିଫଳନକୁ ସେ ମୁକ୍ତକଣ୍ଠରେ ସ୍ୱାଗତ କରିଥିଲେ । ସେ କହିଥିଲେ ଯେ ଓଡ଼ିଆ ସାହିତ୍ୟରେ ଯେଉଁ ତରୁଣମାନଙ୍କର ଅଭ୍ୟୁଦୟ ହୋଇଛି, ସେମାନଙ୍କ ନିମନ୍ତେ କୌଣସି ପ୍ରତିଷ୍ଠିତ ଆଦର୍ଶ ରହିନାହିଁ । ବିଶେଷତଃ ତରୁଣ ସାହିତ୍ୟିକମାନଙ୍କ ରଚନାରେ ଦୋଷ ଦୁର୍ବଳତା ରହିବା ସ୍ୱାଭାବିକ । କିନ୍ତୁ ଏଥିପାଇଁ ସେମାନଙ୍କୁ ନିରୁତ୍ସାହିତ କରିବା କେବେ ଯୁକ୍ତିଯୁକ୍ତ ହେବନାହିଁ । ତାହାଙ୍କ ଭାଷାରେ— "ଆମ୍ଭେମାନେ ଦେଖୁଅଛୁ, ଯୁବକମାନେ ଉନ୍ନତିକାମୀ ହୋଇ ଦ୍ରୁତବେଗରେ ପ୍ରଧାବିତ ହେଉଅଛନ୍ତି । ତାଙ୍କୁ ଗୋଡ଼ାଇ ପାରିବାର ପ୍ରବୀଣମାନଙ୍କର କ୍ଷମତା ନାହିଁ । ପ୍ରବୀଣତିକ ପୂର୍ବ ସ୍ଥିତିଗତିର ଦାସ । ଯୁବକମାନଙ୍କୁ ଦାସବୃତ୍ତି ଅବଲମ୍ବନ କରିବାକୁ କହିଲେ ସେମାନେ ଶୁଣିବେ କାହିଁକି ? ସେମାନଙ୍କର ଉନ୍ନତି ଦେଖି ଆମ୍ଭେମାନେ ଉତ୍ସାହିତ ଓ ସୁଖୀହେବା ଉଚିତ । ଯୁବକଙ୍କର ନୈତିକ ଆଚରଣ ଉନ୍ନତିଲାଭ କରୁଅଛି । ସେମାନଙ୍କର ନିଶା-ପାନ ପ୍ରତି ବିତୃଷ୍ଣା ଜନ୍ମିଅଛି । ସ୍ତ୍ରୀ ପ୍ରତି ସମ୍ମାନ ବଢ଼ୁଅଛି ଏବଂ ବିପନ୍ନ ପ୍ରତି ସାହାଯ୍ୟ ନିମନ୍ତେ ହସ୍ତପ୍ରସାରିତ ହେଉଅଛି, ଏହା ଅତି ସୁଖର କଥା । ପ୍ରବୀଣମାନଙ୍କର କର୍ତ୍ତବ୍ୟ ଦୂରରେ ଦଣ୍ଡାୟମାନ ହୋଇ ସେମାନଙ୍କୁ ମନ୍ଦରୁ ଯାହା ଭଲ ତାହାହିଁ ଦେଖାଇଦେବା ଉଚିତ । ସେମାନଙ୍କର କେବଳ ଅଯୋଗ୍ୟତା ଆମ୍ଭମାନଙ୍କର ଆଲୋଚନାର ବିଷୟ ହେଲେ ଦେଶର ମଙ୍ଗଳ ହେବନାହିଁ ବୋଲି ବିବେଚିତ ହୁଏ ।"

**ସଭାପତିଙ୍କ ଅଭିଭାଷଣ,**

୧୯୬୩ ମସିହା ସେପ୍ଟେମ୍ବର ୧୭ ତାରିଖରେ ଅନୁଷ୍ଠିତ 'ଉତ୍କଳ ସାହିତ୍ୟ ସମାଜ'ର ଅଷ୍ଟାବିଂଶ ବାର୍ଷିକ ଅଧିବେଶନରେ ସଭାପତିତ୍ୱ କରି ଜଳନ୍ଧର ଦେବ ଏହି ଅଭିଭାଷଣଟି ପ୍ରଦାନ କରିଥିଲେ । ସେହି ମସିହାର 'ସହକାର' ପତ୍ରିକାରେ ଏହା ପ୍ରକାଶିତ ହୋଇଥିଲା । ସେହି ସମୟର ଓଡ଼ିଆ ସାହିତ୍ୟର ବିଭିନ୍ନ ଦିଗକୁ ବିଶ୍ଳେଷଣ କରି ନୂତନ ଲେଖକମାନଙ୍କୁ ମୌଳିକ ସାହିତ୍ୟ ସୃଷ୍ଟି ପାଇଁ ସେ ଆହ୍ୱାନ ଜଣାଇଥିଲେ । ପଡ଼ୋଶୀ ବଙ୍ଗଳା ସାହିତ୍ୟର ଅନ୍ଧାନୁକରଣରେ ନିଜ ସାହିତ୍ୟକୁ ବିକୃତ ନ କରିବା ପାଇଁ ଅନୁରୋଧ କରି ସେ କହିଥିଲେ— "ଆମ ଭାଷାର ଉନ୍ନତିକଲେ ସେଥିରୁ ଓ ଅନ୍ୟାନ୍ୟ ଉନ୍ନତଭାଷାମାନଙ୍କରୁ ଭାବ ସଂଗ୍ରହ କରିବାକୁ ଆମ୍ଭେମାନେ ବାଧ୍ୟ । ମାତ୍ର ଅସତ୍ ଅନୁକରଣ ଓ ଚୋରିକଲେ ଆମ୍ଭମାନଙ୍କ ସାହିତ୍ୟର ପବିତ୍ରତା ସର୍ବଥା ନଷ୍ଟ ହେବ, ଏହା ଭାବିରଖିବା ଉଚିତ । ମୋହରେ ପଡ଼ି ଗୋଟାଏ ଯୋଡ଼ାଏ ଶବ୍ଦ ଏ ଭାଷାରେ ଯୋଗକଲେ କି ଶବ୍ଦ ଗନ୍ତାଘର ଭର୍ତ୍ତିହେବ ? ତା'ର ଅନାଟନ ସେ ବା କେବେ ଚୋରି କରିପାରେ ? ମାତ୍ର ଯେଉଁ ଭାଷାର ଅପରନ୍ତ ଭଣ୍ଡାର, ତା'ର ରକ୍ଷକ ଯେବେ ଅନ୍ୟତ୍ର ଚୋରିର ଆକାଙ୍‌କ୍ଷା କରେ, ତାହା କେବଳ ନୀଚ ଲୋଭଣସ୍ୱର କାର୍ଯ୍ୟ କିମ୍ବା ନିଜ ଗନ୍ତାଘରର ସଞ୍ଚିତ ପଦାର୍ଥର ପରିଚୟ ସେ ପାଇନାହିଁ ।"

ଯେତେବେଳେ ଓଡ଼ିଆ ସାହିତ୍ୟକମାନଙ୍କ ମଧ୍ୟରେ ଓଡ଼ିଆ ଅଣଓଡ଼ିଆ ଭିତ୍ତିରେ ଗୋଷ୍ଠୀକନ୍ଦଳ ଚାଲିଥିଲା, ଫଳରେ ସାହିତ୍ୟିକମାନଙ୍କ ମଧ୍ୟରେ ଅଯଥା ମନୋମାଳିନ୍ୟ ସୃଷ୍ଟି ହୋଇ ଏକ ବିଷାକ୍ତ ପରିବେଶ ଓଡ଼ିଆ ସାହିତ୍ୟର ଗତିପଥକୁ ଅବରୋଧ କରୁଥିଲା । ଏଥିପାଇଁ କ୍ଷୋଭ ପ୍ରକାଶକରି ସେ ଭାରତର ଇତିହାସକୁ ସ୍ମରଣ କରାଇ ଦେଇଥିଲେ । ଭ୍ରାତୃବିବାଦରୁ ଭାରତ ତା'ର ସ୍ୱାଧୀନତା ଚିରଦିନ ପାଇଁ ହରାଇଥିଲା । ତେଣୁ ଗୋଟିଏ ଉଦ୍ଦେଶ୍ୟ ସାଧନ ନିମନ୍ତେ ସମସ୍ତେ ଏକମନ ଏକପ୍ରାଣ ଦେଇ ସାହିତ୍ୟ ସୃଷ୍ଟି କରିବା ଆବଶ୍ୟକ । ତାହାଙ୍କ ଭାଷାରେ—"ଆଜିକାଲି ଉତ୍କଳ ସାହିତ୍ୟ କ୍ଷେତ୍ରରେ ସାହିତ୍ୟିକ ଭାଇମାନଙ୍କ ମଧ୍ୟରେ ମନୋମାଳିନ୍ୟର ଗନ୍ଧ ମିଳେ । ମୋ' ପରି ବ୍ୟକ୍ତିପକ୍ଷେ ଏତାଦୃଶ ମନୋମାଳିନ୍ୟ ବଡ଼ ମର୍ମଭେଦ । ସାହିତ୍ୟିକ ଭାଇମାନଙ୍କର ଏହା ଭାବିବା ଉଚିତ ଯେ ଏତାଦୃଶ ଶୁଷ୍କବିବାଦ ଦ୍ୱାରା ଉନ୍ନତିରେ ବାଧା ପଡ଼େ । କେତେକ ଯୁବକ ବଙ୍ଗୀୟ ଓ ଓଡ଼ିଆ ସାହିତ୍ୟିକଙ୍କ ମଧ୍ୟରେ ସମସ୍ତ ସମୟରେ ବିବାଦ ଉପସ୍ଥିତ ହେବାର ଦେଖାଯାଏ । ମୁଁ ଏଥିର କାରଣ କିଛି ବୁଝିପାରେ ନାହିଁ । ଯେଉଁ ବଙ୍ଗୀୟ ଭାଇମାନେ ନିଜକୁ ଉତ୍କଳମାତାର ପାଳିତପୁତ୍ର ବା ପୋଷ୍ୟପୁତ୍ର ବୋଲି ମନେକରନ୍ତି, ସେମାନେ ଅବଶ୍ୟ ଓଡ଼ିଆ ସାହିତ୍ୟର ଉନ୍ନତି

କରିବେ । ଓଡ଼ିଆ ସାହିତ୍ୟକୁ ଯେବେ ସେମାନେ ସଙ୍କର କରିବାକୁ ଚେଷ୍ଟା କରନ୍ତି, ତାହା ସେମାନଙ୍କ ପକ୍ଷରେ ଶୋଭନୀୟ ହେବନାହିଁ ।"

ଓଡ଼ିଶାରେ ପତ୍ରପତ୍ରିକାର ଅଭିବୃଦ୍ଧି ପାଇଁ ଉଚ୍ଚକୋଟୀର ସାହିତ୍ୟସ୍ରଷ୍ଟାଙ୍କର ବିଶେଷ ଅଭାବ ଥିଲା । ଫଳରେ ପତ୍ରପତ୍ରିକାର ପାଠକ ସଂଖ୍ୟା ହ୍ରାସ ହେବାରୁ ପତ୍ରିକାଗୁଡ଼ିକର ଅକାଳ ମୃତ୍ୟୁ ହେଉଥିଲା । ନିଜେ ଦୁଇତିନୋଟି ପତ୍ରିକାର ପ୍ରକାଶନ ସହିତ ଘନିଷ୍ଠଭାବେ ସମ୍ପର୍କିତ ଥିବାରୁ, ପତ୍ରପତ୍ରିକାର ସମ୍ପାଦକମାନଙ୍କ ଦୟନୀୟ ଅବସ୍ଥା କଥା ସେ ଏଥିରେ ଉଲ୍ଲେଖ କରିଥିଲେ ।

'ଉତ୍କଳ ସାହିତ୍ୟ ସମାଜ'ର ପୀଠସ୍ଥଳୀ ଶ୍ରୀରାମଚନ୍ଦ୍ର ଭବନକୁ ସେ ଏକ ପବିତ୍ର ତୀର୍ଥ କ୍ଷେତ୍ରରୂପେ ବର୍ଣ୍ଣନା କରିଛନ୍ତି । କିନ୍ତୁ ଏହି ସାରସ୍ୱତ ତୀର୍ଥସ୍ଥଳୀର ଶୋଭା-ବର୍ଦ୍ଧନ ପାଇଁ ଆବଶ୍ୟକୀୟ ଅର୍ଥର ଅଭାବ ଥିବାରୁ ସେ ଧନିକ ବ୍ୟକ୍ତି ତଥା ରାଜାମହାରାଜାମାନଙ୍କୁ ଏଥିପାଇଁ ଅନୁରୋଧ କରିଥିଲେ । ଭାବବିହ୍ୱଳ କଣ୍ଠରେ ସେ କହିଥିଲେ ଯେ—"ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ ନଥିଲେ, ଜ୍ଞାନ ଚର୍ଚ୍ଚା କରାଯିବ କେଉଁଠାରେ ? ଘରତ ମିଳିଲା, ମାତ୍ର ସାହିତ୍ୟ ଚର୍ଚ୍ଚାର ଉପକରଣତ ଆବଶ୍ୟକ ? ସେଥିପ୍ରତି ଦେଶବାସୀଙ୍କ ସହାନୁଭୂତି ଖୁବ୍ କମ୍ । ଯେହେତୁ ଏ ତୀର୍ଥମହାତ୍ମ୍ୟ ସମସ୍ତଙ୍କ ହୃଦୟରେ ସ୍ଥାନ ପାଇନାହିଁ, ଏହାକୁ ହିଁ ମୁକ୍ତିତୀର୍ଥ ବୋଲିବାକୁ ହେବ । ଅନ୍ୟ ତୀର୍ଥମାନଙ୍କରେ ଧନିକଗଣ ଓ ରାଜାମହାରାଜାମାନେ ଯେଉଁ ପରିମାଣରେ ବ୍ୟୟ କରନ୍ତି, ତହିଁର କିୟଦଂଶ ଏ ତୀର୍ଥରେ ବ୍ୟୟିତ ହେଲେ ଯେ ମୁକ୍ତି ମିଳିବ, ଏହା ସମସ୍ତଙ୍କର ହୃଦୟଙ୍ଗମ ହେବା ଉଚିତ । ଏ ତୀର୍ଥରେ ପଣ୍ଡାମାନେ ସ୍ୱାର୍ଥତ୍ୟାଗୀ ହେବା ଉଚିତ । ଅନ୍ୟ ତୀର୍ଥମାନଙ୍କର ଦାନ ଠାକୁର ପେଟକୁ ନଯାଇ ପଣ୍ଡାଙ୍କ ପେଟଜ୍ୱାଳା ନିବାରଣ କରେ, ଏ ତୀର୍ଥର ଦାନ ମନ୍ଦିରରେ ଏବଂ ମନ୍ଦିର ଦେବତା ଗଠନରେ ବ୍ୟୟିତ ହୁଏ ।"

**କଟକରେ ସାହିତ୍ୟ ଚର୍ଚ୍ଚା**

୧୯୩୭ ମସିହା ସେପ୍ଟେମ୍ବର ମାସରେ ଉତ୍କଳ ସାହିତ୍ୟ ସମାଜର ବାର୍ଷିକ ଅଧିବେଶନରେ ସଭାପତିତ୍ୱ କରିବା ଉଦ୍ଦେଶ୍ୟରେ ସେ କଟକ ଯାଇଥିଲେ । କଟକ ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ରରୂପେ ବହୁଦିନ ହେବ ପରିଗଣିତ । କିନ୍ତୁ ସେତେ-ବେଳେ 'ଉତ୍କଳ ସାହିତ୍ୟ ସମାଜ' ଭଳି ଏକାଧିକ ସାହିତ୍ୟାନୁଷ୍ଠାନଗୁଡ଼ିକ ମଧ୍ୟରେ ବାଦବିବାଦ ଫଳରୁ ସେସବୁ କାର୍ଯ୍ୟତଃ ନିଷ୍କ୍ରିୟ ରହିଥିଲା । ସାହିତ୍ୟ ସମାଜର ବାର୍ଷିକ ଅଧିବେଶନ କାଳରେ ଲେଖକ ଏହି ଅପ୍ରୀତିକର ପରିବେଶକୁ ଉପଲବ୍ଧି କରିଥିଲେ । କଟକରୁ ଫେରିବା ପରେ ନିଜର ଅନୁଭୂତି ସମ୍ବଳିତ ଏହି ଲେଖାଟି ସେ 'ସହକାର' ପତ୍ରିକାରେ ପ୍ରକାଶ କରି ଓଡ଼ିଆ ସାହିତ୍ୟର ନବୀନ ତଥା ପ୍ରବୀଣ ସାହିତ୍ୟିକମାନଙ୍କୁ ନିଜ ନିଜ ମଧ୍ୟରେ ଥିବା ମତପାର୍ଥକ୍ୟର ଦୂରୀକରଣ ପାଇଁ ଅନୁରୋଧ ଜଣାଇଥିଲେ ।

ସାହିତ୍ୟର ଗତିଧାରା ସର୍ବଦା ପରିବର୍ତ୍ତନଶୀଳ । ନୂତନତ୍ୱର ପରୀକ୍ଷା ନିରୀକ୍ଷା ମଧ୍ୟ ଦେଇ ପ୍ରତ୍ୟେକ ସାହିତ୍ୟର ଅଗ୍ରଗତି ସମ୍ଭବ ହୁଏ । ଏଣୁ ନୂତନତାକୁ ଅସ୍ୱୀକାର କରିବା କେବଳ ଆତ୍ମପ୍ରବଞ୍ଚନା ବ୍ୟତୀତ ଅନ୍ୟକିଛି ନୁହେଁ ବୋଲି ଲେଖକ ସୂଚାଇ ଥିଲେ । 'ସବୁଜ ସାହିତ୍ୟ ସମିତି'ର ତରୁଣ ଲେଖକମାନଙ୍କ ପ୍ରତି ଯେଉଁ ଆକ୍ଷେପମୂଳକ ଆଲୋଚନା ସେହି ଅଧିବେଶନରେ କରାହୋଇଥିଲା, ସେ ସମ୍ପର୍କରେ ସୂଚନା ଦେଇ ସେ ଲେଖିଥିଲେ—"ପ୍ରାଚୀନ ବନ୍ଧୁଙ୍କରେ କେହି କିଛି କହିଥିଲେ କି ନା ସ୍ମରଣ ହେଉ ନାହିଁ । ମାତ୍ର ନୂତନ ଉପନ୍ୟାସ, ରଚନା, ଭାଷା ଓ କବିତାର ଦୋଷାଲୋଚନା ଯଥେଷ୍ଟରୂପେ ହୋଇଥିଲା । ସମାଲୋଚକ ଦୁଇଜଣ ସଂସ୍କୃତଜ୍ଞ ପ୍ରବୀଣ ସାହିତ୍ୟିକ । ସେମାନଙ୍କ ମଧ୍ୟରୁ ଜଣେ ଆଧୁନିକ କ୍ଷୁଦ୍ର କବିତାକୁ କୁଇନାଇନ୍ ସହିତ ତୁଳନା କରିଥିଲେ । କେବଳ ଯେ ତୁଳନା କଲେ ତାହା ନୁହେଁ, ଆଲୋଚନାବେଳେ ତାଙ୍କର ମୁଖ କୁଇନାଇନ୍ ଆସ୍ୱାଦନ କଲା ଭଳିଆ ବିକୃତି ଲାଭ କରୁଥିଲା ।"

ପ୍ରାବନ୍ଧିକ 'ସବୁଜ ସାହିତ୍ୟ ସମିତି' ପ୍ରତି ଅଯଥାରେ ଯେଉଁମାନେ ବିଦ୍ୱେଷାଚରଣ କରୁଥିଲେ, ସେମାନଙ୍କ ସମାଲୋଚନା କରିଛନ୍ତି । ଏହି ସମିତିଦ୍ୱାରା ପ୍ରକାଶିତ ପୁସ୍ତକମଧ୍ୟେ, ମୁକ୍ତାଗଡ଼ର କ୍ଷୁଧା, ଅମରଚିତା, ସୌମ୍ୟା, ବାସନ୍ତୀ, ଧାମରା ପ୍ରଭୃତି ପୁସ୍ତକ ପାଠକରି ସେ ସବୁର ପ୍ରଶଂସା କରିଥିଲେ । 'ସବୁଜ' ଶବ୍ଦକୁ ବିଦେଶୀ ବୋଲି ଆକ୍ଷେପିତ କରୁଥିବା ଆଲୋଚକମାନଙ୍କୁ ସେ କହିଥିଲେ—"ମାତ୍ର କି ହେତୁରୁ କେଜାଣି ସମିତି ପ୍ରତି ଅନେକଙ୍କର ବିଷଦୃଷ୍ଟି । ଅନେକଙ୍କୁ 'ସବୁଜ' ଶବ୍ଦଟା କର୍ଣ୍ଣପ୍ରିୟ ଓ ମୁଖରୋଚକ ନୁହେଁ । ଅନେକ ଭାବନ୍ତି ଏହା ବଙ୍ଗଳା ଶବ୍ଦ । ମାତ୍ର ସବୁଜ ବଙ୍ଗ ନୁହେଁ, ପାରସିକ ଶବ୍ଦ—ଅତି କୋମଳ ମଧୁର ଶ୍ରୁତିପ୍ରିୟ । ବର୍ଣ୍ଣଟା ନେତ୍ର ପ୍ରୀତିକର । ବର୍ଣ୍ଣମାନଙ୍କ ମଧ୍ୟରେ ସବୁଜ ରାଜା । ସବୁଜ ଶବ୍ଦଯେ ଓଡ଼ିଆ ସାହିତ୍ୟକୁ ଆଜଯାଏ ଆସି ନଥିଲା, ଏହା ଅନୁତାପର କଥା । କବିସମ୍ରାଟ ଏତେଗୁଡ଼ିଏ ପାରସିକ ଶବ୍ଦ ତାଙ୍କ ଗୀତରେ ବ୍ୟବହାର କଲେ ସେଥିନିମନ୍ତେ କେହି ବାଛବାଚ କରିନାହାନ୍ତି । ବିଂଶ ଶତାବ୍ଦୀର ଚତୁର୍ଥ ଦଶକରେ ନବ୍ୟ ଶିକ୍ଷିତଙ୍କଦ୍ୱାରା ସବୁଜ ତୁଲ୍ୟ ଅମୂଲ୍ୟ ଶବ୍ଦ ଓଡ଼ିଆ ସାହିତ୍ୟକୁ ପ୍ରବେଶ ଲାଭ କଲା ବୋଲି ଆକ୍ଷେପ କରିବା ଦୁଃଖର ବିଷୟ ନୁହେଁ କି ?"

ପ୍ରାଚୀନ ଓଡ଼ିଆ ସାହିତ୍ୟର ସଂଗ୍ରହ ଓ ପ୍ରକାଶନ ପାଇଁ ସେତେବେଳେ 'ପ୍ରାଚୀ ସମିତି' ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । କିନ୍ତୁ କେତେକ ଈର୍ଷ୍ୟାପରାୟଣ ସମାଲୋଚକ ପ୍ରାଚୀସମିତିର ଏହି ପ୍ରଚେଷ୍ଟାକୁ ଅପଚେଷ୍ଟା ବୋଲି ଆଖ୍ୟାୟିତ କରୁଥିଲେ । ସେମାନେ କହୁଥିଲେ ଯେ ପ୍ରାଚୀନ ଓଡ଼ିଆ ସାହିତ୍ୟ ଅଶ୍ଳୀଳତାରେ ପରିପୂର୍ଣ୍ଣ । ତେଣୁ ସେସବୁ ସାହିତ୍ୟର ପ୍ରକାଶନଦ୍ୱାରା ସାମାଜିକ ବ୍ୟଭିଚାର ବୃଦ୍ଧି ପାଇବ । ଏହି ତଥାକଥିତ-

ଶୀଳବାନ ସମାଲୋଚକମାନଙ୍କୁ ପ୍ରାବନ୍ଧିକ କହିଥିଲେ—"ଏହି ସମିତି ଉତ୍କଳର ନାନାସ୍ଥାନରୁ ପ୍ରାଚୀନ ଉତ୍କଳ କବିମାନଙ୍କର ରଚିତ ପୁସ୍ତକମାନ ସଂଗ୍ରହ କରି ପ୍ରକାଶ କରୁଅଛି । ଦେଖିଲି ଏ ସମିତି ପ୍ରତି ଅନେକ ନବୀନ ଓ ପୁରୁଣା ସାହିତ୍ୟିକଙ୍କ ବିମୁଖ କାହିଁକି ? ଅନେକଙ୍କର ମତ ଅଶ୍ଳୀଳ ପୁସ୍ତକ ପ୍ରଚାର ହେଉଛି । ଅନେକ କହନ୍ତି ସେମାନେ ଯାହା ପୂର୍ବ ସଂସ୍କରଣମାନଙ୍କରେ ପାଠ କରିଥିଲେ, ସେଥିରୁ ଭିନ୍ନ ଭିନ୍ନ କରି ଛାପିଥିବାରୁ ଉଭୟ ବିଧିସଙ୍କଟ । ପ୍ରାଚୀନ କବି ମାନେହିଁ ଅଶ୍ଳୀଳ କାବ୍ୟ ଓ ଗୀତ ଲେଖକ । ଏହା ବୋଲି କି ଦେଶର ପ୍ରାଚୀନ ଲେଖାତକ କାଠଯୋଡ଼ିରେ ଭସାଇ ଦେବା ? ପ୍ରାଚୀନ ପୁସ୍ତକ, ପ୍ରାଚୀନ ମୂର୍ତ୍ତି, ପ୍ରାଚୀନ ଆଉ ଯାହା ଅଛି ସେଗୁଡ଼ିକ ଉଦ୍ଧାର ହିଁ ଦେଶର ଓ ଜାତିର ଗୌରବ । × × × ତେବେ ଆମ ଦେଶରେ ଗୋଟିଏ ସମିତି ସେସବୁ ସଂଗ୍ରହ କରି ରକ୍ଷା କରି, ମୁଦ୍ରିତ କରି ଦେଶର ଧନ ସାଇତି ରଖିବା ହେତୁ ଦୋଷୀ କାହିଁକି ? ଏ କାର୍ଯ୍ୟକୁ ଅଶ୍ଳୀଳସାହିତ୍ୟ ପ୍ରଚାର ବୋଲିବା ଯୁକ୍ତିସଙ୍ଗତ ନୁହେଁ । ଯେବେ କୌଣସି ସମିତି ଆଧୁନିକ ଲେଖକମାନଙ୍କୁ ଏତାଦୃଶ ଅଶ୍ଳୀଳ କାବ୍ୟ ଲେଖିବାକୁ ପ୍ରୋତ୍ସାହିତ କରେ ଏବଂ ଅଶ୍ଳୀଳ କାବ୍ୟଦ୍ୱାରା ଦେଶର ଉନ୍ନତି ଇତ୍ୟାଦି ଉପଦେଶ ଦିଏ, ଅଥବା କୌଣସି କବି ଅଧୁନା ଏପରି କାବ୍ୟ ଲେଖେ, ତେବେ ସେ ଦେଶଦ୍ରୋହୀ ଓ ସାହିତ୍ୟର ଅପକାରକ ।"

ଏହି ପ୍ରବନ୍ଧରେ ପ୍ରାବନ୍ଧିକ ସେସମୟର ପ୍ରକାଶିତ କେତୋଟି ଓଡ଼ିଆ ପତ୍ରପତ୍ରିକା ସମ୍ବନ୍ଧରେ ଆଲୋଚନା କରିଥିଲେ । 'ଉତ୍କଳ ଦୀପିକା', 'ସମାଜ', 'ଉତ୍କଳ ସାହିତ୍ୟ', 'ସହକାର', 'ରସଚକ୍ର', 'ଜହ୍ନମାମୁଁ', ଓ 'ଯୁଗବୀଣା' ପ୍ରଭୃତି ପତ୍ରପତ୍ରିକାଗୁଡ଼ିକ ସମ୍ପର୍କରେ ସଂକ୍ଷିପ୍ତ ଟିପ୍‌ପଣୀ ଦେଇ 'ଉତ୍କଳସାହିତ୍ୟ'ର ସୁଯୋଗ୍ୟ ସମ୍ପାଦକ ବାଗ୍ମୀ ବିଶ୍ୱନାଥ କରଙ୍କର ଦୀର୍ଘଦିନ ନୀରବତାକୁ ସେ ଅନୁମୋଦନ ନକରି କହିଥିଲେ—"ସମ୍ପାଦକୀୟ ନିଷ୍ପକ୍ଷପାତ ମନ୍ତବ୍ୟଦ୍ୱାରା ପତ୍ରିକାର ଗୌରବ ଅକ୍ଷୁର୍ଣ୍ଣ ରହେ । ଏକ ସମୟରେ 'ଉତ୍କଳସାହିତ୍ୟ'ର ସମ୍ପାଦକଙ୍କ ନିର୍ଭୀକ ଓ ଉତ୍ସାହପ୍ରଦ ମନ୍ତବ୍ୟ ନିମନ୍ତେ (କି ସାମାଜିକ, କି ରାଜନୈତିକ, କି ସାହିତ୍ୟିକ) ପାଠକମାନେ ଲୁବ୍ଧ ରହୁଥିଲେ । ମାତ୍ର କେତେବର୍ଷ ହେଲା ବିଶ୍ୱନାଥବାବୁ ସାହିତ୍ୟ ପ୍ରଚାର କରୁଅଛନ୍ତି ସତ, ମାତ୍ର ସେଥିରେ ତାଙ୍କ ଲେଖା ଆଦୌ ବାହାରିବାକୁ ନାହିଁ । ଏଥି ନିମନ୍ତେ ଅନେକେ ବିଶେଷ ଦୁଃଖିତ । ପ୍ରବୀଣ ସମ୍ପାଦକଙ୍କର ଏଭଳି ସମୟରେ ସାହିତ୍ୟ କ୍ଷେତ୍ରରେ ଅହେତୁକ ନିବୃତ୍ତି କଦାପି ଅନୁମୋଦନୀୟ ନୁହେଁ ।"

ବିଭିନ୍ନ ସଭାସମିତିରେ ଉପସ୍ଥିତ ଶିକ୍ଷିତ ମଣ୍ଡଳୀଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ରହିବାକଥା, ଏହିସବୁ ଗୋଷ୍ଠୀ କନ୍ଦଳ ଫଳରେ ସେତେବେଳେ ତାହା ବ୍ୟାହତ ହୋଇଥିଲା । ସଭାସମିତିକୁ ଔପଚାରିକତା ଦୃଷ୍ଟିରୁ ବହୁ ସାହିତ୍ୟିକମାନେ ଆସୁଥିଲେ ।

କିନ୍ତୁ ସଭାର କାର୍ଯ୍ୟକ୍ରମ ପ୍ରତି ସେମାନଙ୍କର କୌଣସି ଆଗ୍ରହ ପ୍ରକାଶ ପାଉନଥିଲା । ଉତ୍କଳ ସାହିତ୍ୟ ସମାଜର ସେହି ଅଧିବେଶନରେ ଯୋଗ ଦେଇଥିବା ଶିକ୍ଷିତ ବ୍ୟକ୍ତିମାନଙ୍କ ମଧ୍ୟରେ ଏହି ମତାନ୍ତରର ସୂଚନା ପ୍ରାବନ୍ଧିକ ପାଇଥିଲେ । ସୌଜନ୍ୟତା ଦୃଷ୍ଟିରୁ ପଣ୍ଡିତ ସଭାପତିଙ୍କ ଅଭିଭାଷଣ ପାଠ ଶେଷପର୍ଯ୍ୟନ୍ତ ଶ୍ରୋତାମାନେ ବସିରହିଥିଲେ । କିନ୍ତୁ ତାହାପରେ ନିର୍ଲିପ୍ତ ଭାବରେ ଶ୍ରୋତାମାନେ ଆସନତ୍ୟାଗ କରି ବିଦାୟ ନେଲେ । ସାହିତ୍ୟ ଆଲୋଚନା ପ୍ରତି ଏହି ନିର୍ଲିପ୍ତତାକୁ ଲକ୍ଷ୍ୟକରି ସେ ଲେଖିଥିଲେ—"ସଭାଭଙ୍ଗ ପରେ ସାହିତ୍ୟସଭା ଗୋଟାଏ ରେଳଗାଡ଼ି ବ୍ୟାପାର ପରି ମୋତେ ବୋଧ ହେଲା । ଯେପରି ରେଳଗାଡ଼ିରେ ଲୋକେ ଜଣଜଣ ହୋଇ ବସନ୍ତି, ଗାଡ଼ି ପୂର୍ଣ୍ଣ ହୁଏ, କେତେକ ସମୟ ପାଇଁ ଯାତ୍ରୀମାନଙ୍କ ମଧ୍ୟରେ ବାକ୍ୟାଳାପ, ବାକ୍‌ବିତଣ୍ଡା ଓ ତର୍କଯୁଦ୍ଧ ପର୍ଯ୍ୟନ୍ତ ହୁଏ, ରେଳଗାଡ଼ି ଗନ୍ତବ୍ୟସ୍ଥାନରେ ପହଞ୍ଚିଲାରୁ ପ୍ରତ୍ୟେକ ତରତର ହୋଇ ଗାଡ଼ିରୁ ଉତୁରି ଚାଲି ଯାଆନ୍ତି । କାହାରି ଖବର ଆଉ କେହି ନେବାକୁ ସମୟ ପାଆନ୍ତି ନାହିଁ— ରାମଚନ୍ଦ୍ର ଭବନ ସାହିତ୍ୟସେବୀଙ୍କ ଦ୍ୱାରା ପରିପୂର୍ଣ୍ଣ ହେଲା । ସଭାକାର୍ଯ୍ୟ ଶେଷ ନ ହେଉଣୁ ସମସ୍ତେ ଯିବାକୁ ବ୍ୟସ୍ତ ହେଲେ । ସାହିତ୍ୟ ସଭା ଶେଷ ହେଲା, ସଭାପତିର ଅଭିଭାଷଣ ମଧ୍ୟ ଗୋଟାଏ ଫଟୋଗ୍ରାଫ୍ ବ୍ୟାପାର ଭଳି । ସଭାପତିର ଅଭିଭାଷଣ ରେକର୍ଡ଼ ଯଦି ଶସ୍ତାରେ ପ୍ରସ୍ତୁତ ହୋଇ ପାରୁଥାନ୍ତା, ତାହାହେଲେ ସଭାପତିଙ୍କ ଅଭ୍ୟର୍ଥନା ନକରି ଫନୋଗ୍ରାଫ ରେକର୍ଡ଼ଦ୍ୱାରା ଅଭିଭାଷଣ ପାଠ ସମସ୍ତେ ଶୁଣି ପାରନ୍ତେ । × × × × ଧରାବନ୍ଧା ନିୟମ ଓ ଅଭ୍ୟାସର ବ୍ୟତିକ୍ରମ କରିବାକୁ କେହି ରାଜି ନୁହନ୍ତି । ସଭାଭଙ୍ଗ ଉତ୍ତାରୁ ବୋଧହୁଏ ସମସ୍ତେ ଭାବିଲେ ଯେ, ସେମାନେ କର୍ତ୍ତବ୍ୟର ଗୋଟିଏ ଦାୟିତ୍ୱରୁ ରକ୍ଷା ପାଇଲେ । ମୁଁ ଯଦି ସେହି ଗାଡ଼ିରେ ରେଳଗାଡ଼ି ଚଢ଼ି ଫେରିଆନ୍ତି । ବୋଧହୁଏ କାହାରି ଦୁଃଖ ହୋଇ ନଥାନ୍ତା କିମ୍ବା ମୋର କର୍ତ୍ତବ୍ୟ ଶେଷ ନକରି ଚାଲି ଆସିଲି ବୋଲି ମୋତେ କେହି ଦୋଷ ମଧ୍ୟ ଦେଇ ନଥାନ୍ତେ ।" ଏହି ଉକ୍ତିଗୁଡ଼ିକରୁ ସମସାମୟିକ ସାହିତ୍ୟିକ ବାତାବରଣର ସ୍ପଷ୍ଟ ପରିଚୟ ମିଳିଥାଏ ।

### ସାହିତ୍ୟିକ ଅଭିଭାଷଣ

୧୯୩୫ ମସିହାରେ ସ୍ଥାପିତ 'ବାରିପଦା ସାହିତ୍ୟ ସମାଜ'ର ପ୍ରଥମ ଉଦ୍‌ଘାଟନୀ ଉତ୍ସବରେ ସଭାପତି ଭାବେ ପ୍ରାବନ୍ଧିକ ଜଳନ୍ଧର ଦେବ ସମ୍ମାନିତ ହୋଇଥିଲେ । ସେହି ସାରସ୍ୱତ ସମାବେଶରେ ପ୍ରଦତ୍ତ ଅଭିଭାଷଣଟି ସେହି ମସିହାର 'ଭଞ୍ଜ ପ୍ରଦୀପ' ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏଥିରେ ସେ ବୈଦିକ ଭାଷାଠାରୁ ଆରମ୍ଭ କରି ସଂସ୍କୃତର ବିଭିନ୍ନ ପର୍ଯ୍ୟାୟରେ ରଚିତ ବିଭିନ୍ନ ପୁରାଣଶାସ୍ତ୍ର କାବ୍ୟ ନାଟକାଦି ବିଷୟରେ ସଂକ୍ଷିପ୍ତ ସୂଚନା ପ୍ରଦାନ କରିଥିଲେ । ଭଞ୍ଜଭୂମି ମୟୂରଭଞ୍ଜ

ରାଜ୍ୟର ପ୍ରାଚୀନ ଐତିହ୍ୟକୁ ସ୍ମରଣ କରି ଓଡ଼ିଆ ସାହିତ୍ୟ ସଂସ୍କୃତିର ପ୍ରସାର ଓ ପ୍ରଚାର ନିମନ୍ତେ ସେହି ରାଜବଂଶର ଅବିସ୍ମରଣୀୟ ଅବଦାନକୁ ସ୍ମରଣ କରିଥିଲେ । ଓଡ଼ିଆ ସାହିତ୍ୟ ସହିତ 'ଭଞ୍ଜ' ଶବ୍ଦର ଅଚ୍ଛେଦ୍ୟ ସମ୍ପର୍କ କିପରି କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ସାହିତ୍ୟଦ୍ୱାରା ସମ୍ଭବ ହୋଇଛି । ତାହା ଉଲ୍ଲେଖ କରି ଏହି ବରିଷ୍ଠ ସାହିତ୍ୟିକ ପ୍ରତିଭା ପ୍ରତି ନିଜର କୃତଜ୍ଞତା ପ୍ରକାଶ କରିଥିଲେ ।

ସମସାମୟିକ ଓଡ଼ିଆ ସାହିତ୍ୟରେ କେତେକ ଲେଖକ ପ୍ରାଚୀନ ଓଡ଼ିଆ କାବ୍ୟକବିତାର ପଦାଙ୍କ ଅନୁସରଣ କରି ନାରୀଚରିତ୍ର ଚିତ୍ରଣରେ ଗତାନୁଗତିକତାକୁ ପ୍ରତିଫଳିତ କରିବା ପାଇଁ ଚେଷ୍ଟା କରୁଥିବାରୁ କ୍ଷୋଭ ପ୍ରକାଶ କରି ସେ କହିଥିଲେ — ''ନିର୍ଜନରେ ତପି ରମଣୀ ପ୍ରତିମା ଗଢ଼ିବାର କାଳ ବିତିଗଲା । ଏକାଳର ନାରୀ ଅବଳା ନୁହେଁ । ଆଜି ଲବଣି ପିତୁଳା ବୋଇଲେ ତା'ର ଅପମାନ, ଶିକ୍ଷିତ ସମାଜର ନାରୀମାନେ ବହୁ ଦିନରୁ ହରିଦ୍ରା ଓ କୁଙ୍କୁମ ବ୍ୟବହାର ତ୍ୟାଗ କଲେଣି । ତଥାପି ନାରୀମାନେ କେତକୀ ସ୍ୱର୍ଣ୍ଣବର୍ଣ୍ଣା, ଚମ୍ପକଦାମ ଗୌରୀ ବୋଲି ଉପହାସ କରିବା ନବ ଶିକ୍ଷିତ କବି ପକ୍ଷରେ ଶୋଭନୀୟ କି ? ବିଂଶ ଶତାବ୍ଦୀର କବିମାନଙ୍କ ଶିରୀଷ ଓ ପଦ୍ମର ମୋହ ଏପର୍ଯ୍ୟନ୍ତ ଛୁଟି ନାହିଁ । ନାରୀ ଅଦ୍ୟାପି ଶିରୀଷ ମୃଦୁଳା, ପଦ୍ମଲୋଚନା, ଆଠଶତ ବର୍ଷରେ ପୁଷ୍ପରାଜ ଗୋଲାପ କବି ସମ୍ପ୍ରଦାୟରେ ଗ୍ରହଣଯୋଗ୍ୟ ହୋଇନାହିଁ । ଅଥଚ ଗନ୍ଧରେ ବର୍ଣ୍ଣରେ ତାହା ପଦ୍ମ ଅପେକ୍ଷା ଶ୍ରେଷ୍ଠ, ଶିରୀଷଠାରୁ ମୃଦୁଳ । ଗୋଲାପ ଏଦେଶର କବିମାନଙ୍କର ଉପମା ସାମଗ୍ରୀ ନୋହୁ, ଏଥିରେ କ୍ଷୋଭ ନାହିଁ, ମାତ୍ର କବିସମ୍ପ୍ରଦାୟ ଯେ ଗଡ୍ଡାଳିକା ପ୍ରବାହ ତୁଲ୍ୟ ପରିଚାଳିତ, ନାରୀର ରୂପ ବର୍ଣ୍ଣନା ତହିଁର ପ୍ରକୃଷ୍ଟ ଉଦାହରଣ ।"

ସାହିତ୍ୟ ସାହିତ୍ୟ ମଧ୍ୟରେ ଭାବର ଆଦାନ ପ୍ରଦାନ ଏକ ଚିରନ୍ତନ ପ୍ରକ୍ରିୟା । ଏହାଦ୍ୱାରା ସାହିତ୍ୟ ଉନ୍ନତ ହୁଏ । କିନ୍ତୁ ଗୋଟିଏ ସାହିତ୍ୟର ରଚନା ଓ କଳ୍ପନାକୁ ନିଜସାହିତ୍ୟରେ ଗ୍ରହଣ କରିବା ସର୍ବଦା ନିନ୍ଦନୀୟ । ଏହାଦ୍ୱାରା ସାହିତ୍ୟର ବିକାଶ ଅପେକ୍ଷା ବିନାଶର ପଥ ଉନ୍ମୁକ୍ତ ହୁଏ । ଏଣୁ ଅନୁକରଣ ପ୍ରିୟ ଓଡ଼ିଆ ଲେଖକମାନଙ୍କୁ ସତର୍କ କରାଇଦେବାକୁ ଯାଇ ସେ କହିଥିଲେ—''ଭାବରାଜ୍ୟରେ ସମସ୍ତଙ୍କର ଅଧିକାର ଅଛି । ମାତ୍ର ରଚନା ଓ କଳ୍ପନା ନିଜସ୍ୱ । ପରର ରଚନା ବା ପରର କଳ୍ପନା ନିଜ ରଚନାରେ ଭର୍ତ୍ତିକରିବା ବଡ଼ ନିନ୍ଦନୀୟ । ଓଡ଼ିଆ ଭାଷା ଶବ୍ଦ ସମ୍ପଦରେ ଦରିଦ୍ର ନୁହେଁ । ନିଜଘରେ ନଥିଲେ ପରଘରୁ ଉଧାର ଆଣିବା ଦୋଷାବହ ବା ନିନ୍ଦନୀୟ ନୁହେଁ, ମାତ୍ର ନିଜଘରେ ଥିବାସତ୍ତ୍ୱେ ଲୋଭ ପରବଶ ହୋଇ ପରଠାରୁ ଆଣିବା ଦୋଷାବହ ଓ ନିନ୍ଦନୀୟ ।''

## ରାଧାନାଥଙ୍କ କାବ୍ୟରେ ନାରୀର ସ୍ଥାନ

କବିବର ରାଧାନାଥ ରାୟଙ୍କ 'ପାର୍ବତୀ' କାବ୍ୟକୁ କେନ୍ଦ୍ରକରି ଉନବିଂଶ ଶତାବ୍ଦୀର ଶେଷ ଦଶକରେ ଓଡ଼ିଆ ସାହିତ୍ୟରେ ଏକ ବିବାଦମାନ ପରିସ୍ଥିତି ସୃଷ୍ଟି ହୋଇଥିଲା । 'ଇନ୍ଦ୍ରଧନୁ' ଓ 'ବିଜୁଳି' ପତ୍ରିକାଦ୍ୱୟ ଦୁଇ ପରସ୍ପର ବିରୋଧୀ ଗୋଷ୍ଠୀଙ୍କୁ କେନ୍ଦ୍ରକରି ଆପତ୍ତିଜନକ ଲେଖାମାନ ପ୍ରକାଶ କରିଥିଲେ । ଏହି ବିବାଦୀୟ ପରିବେଶ ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ବହୁଳାଂଶରେ ଦୂରୀଭୂତ ହୋଇଯାଇଥିଲା । କିନ୍ତୁ ୧୯୩୬ ମସିହା 'ସହକାର' ପତ୍ରିକାର ୧୮ଶ ସଂଖ୍ୟାରେ ଭବଭୂତି ରାୟ 'ରାଧାନାଥ କାବ୍ୟରେ ନାରୀର ସ୍ଥାନ' ଶୀର୍ଷକ ଗୋଟିଏ ଆଲୋଚନା ପ୍ରକାଶ କରି 'ପାର୍ବତୀ' କାବ୍ୟରେ ବର୍ଣ୍ଣିତ କୌଶଲ୍ୟା ଓ ଗଙ୍ଗେଶ୍ୱରଙ୍କ ଅବୈଧ ପ୍ରଣୟ ନିମନ୍ତେ ରାଜା ସୁଢ଼ଳ ଦେବଙ୍କ ଉପରେ ଦୋଷାରୋପ କରି ରାଧାନାଥଙ୍କୁ ଦୋଷମୁକ୍ତ କରିବା ପାଇଁ ପ୍ରୟାସ କରିଥିଲେ । ଘଟଣାକ୍ରମେ ଏହି ଆଲୋଚନାଟି ଜଳନ୍ଧରଙ୍କ ଦୃଷ୍ଟିଗୋଚର ହେବାରୁ ସେ ଏଥିପାଇଁ ଗଭୀର ଦୁଃଖ ଅନୁଭବ କରି ସେହି ପ୍ରବନ୍ଧର ପ୍ରତିବାଦ ସ୍ୱରୂପ ଏହା ରଚନା କରିଥିଲେ । ଭବଭୂତି ରାୟଙ୍କ ଯୁକ୍ତିଥିଲା ଯେ 'ପାର୍ବତୀ' କାବ୍ୟ ପ୍ରଥମେ 'ହିତୈଷିଣୀ' ପତ୍ରିକାରେ ଧାରାବାହିକ ଭାବରେ ପ୍ରକାଶିତ ହେବା ପରେ ସେହି ପ୍ରେସରୁ ପୁସ୍ତକାକାରରେ ପ୍ରକାଶିତ ହୋଇଥିଲା । ଏଣୁ ଏହି କାବ୍ୟର ବିଷୟବସ୍ତୁ ସୁଢ଼ଳ ଦେବଙ୍କ ଅନୁମୋଦନ ଲାଭ କରିଥିବା ନିଶ୍ଚିତବୋଲି ସେ ଯୁକ୍ତି ବାଢ଼ିଥିଲେ । କିନ୍ତୁ ପ୍ରାବନ୍ଧିକ ଏହି ପ୍ରତିବାଦମୂଳକ ଲେଖାରେ କେଉଁ ପରିସ୍ଥିତିରେ 'ହିତୈଷିଣୀ' ପାର୍ବତୀ କାବ୍ୟର ପ୍ରକାଶ କରିଥିଲା, ତାହାର ନିର୍ଦ୍ଦିଷ୍ଟ ସୂଚନା ପ୍ରଦାନ କରିଥିଲେ । ସେ ଲେଖିଥିଲେ—"ସେତେବେଳେ ହିତୈଷିଣୀର ବାଲ୍ୟାବସ୍ଥା । ତାହାର ଶ୍ରୀବୃଦ୍ଧି ନିମନ୍ତେ ସୁଦକ୍ଷ ସମ୍ପାଦକଙ୍କର ଯାହା କର୍ତ୍ତବ୍ୟ ତାହା କରିବାରେ ନୀଳମଣି ବିଦ୍ୟାରତ୍ନଙ୍କର ତ୍ରୁଟି ନଥିଲା । ସେ ଉତ୍କଳର ସୁଲେଖକମାନଙ୍କଠାରୁ ପ୍ରବନ୍ଧ କବିତା ପ୍ରଭୃତି ଯୋଗାଡ଼ କରିବାରେ ବିଶେଷ ଯତ୍ନଶୀଳ ଥିଲେ । ତାଙ୍କର ଅନୁରୋଧ କବି ରାଧାନାଥଙ୍କଠାରେ ନିଷ୍ଫଳ ହେଲା ନାହିଁ । କବି ରାଧାନାଥଙ୍କ ରଚିତ ପ୍ରକାଣ୍ଡ କାବ୍ୟ ଖଣ୍ଡେ ଧାରାବାହିକ ରୂପେ ସାପ୍ତାହିକ ପତ୍ରିକାରେ ମୁଦ୍ରିତ ହେବା ସମସ୍ତଙ୍କ ପକ୍ଷରେ ଆନନ୍ଦର ବିଷୟ । ଏହା ପତ୍ରିକାର ପ୍ରଶଂସାବାଦ ଓ ବିଜ୍ଞାପନ । × × × ଏଥି ନିମନ୍ତେ ନୀଳମଣି ବିଦ୍ୟାରତ୍ନ ସଚ୍ଚିଦାନନ୍ଦ ଦେବଙ୍କ ନିକଟରେ ପ୍ରସ୍ତାବ କଲେ 'ହିତୈଷିଣୀ'ରେ ମୁଦ୍ରିତ ହେବା ନିମନ୍ତେ 'ପାର୍ବତୀ' କାବ୍ୟ ତ 'କମ୍ପୋଜ' ହେବ, ତାହାଯେବେ ପୁସ୍ତକାକାରରେ ରଖାଯାଏ, ତେବେ କାବ୍ୟଟି ପୁନର୍ବାର ଛପାଇବାକୁ ହେବ ନାହିଁ । ସଚ୍ଚିଦାନନ୍ଦ ଏଥିରେ ସ୍ୱୀକୃତ ହେଲେ, ମାତ୍ର ତାଙ୍କ ପିତାଙ୍କର ସମ୍ମତି ଆବଶ୍ୟକ କଲେ । ନୀଳମଣି ବିଦ୍ୟାରତ୍ନ ଅନାୟାସରେ ସୁଢ଼ଳ ଦେବଙ୍କ ସମ୍ମତି ପ୍ରାପ୍ତ ହେଲେ । 'ପାର୍ବତୀ' କାବ୍ୟ ଧାରାବାହିକ ରୂପେ 'ହିତୈଷିଣୀ'ରେ ମୁଦ୍ରିତ

ହେବାକୁ ଲାଗିଲା । ମାତ୍ର 'ପାର୍ବତୀ' କାବ୍ୟରେ କ'ଣ ଥିଲା ବା ନଥିଲା, ତାହା ସୂଢ଼ଲଦେବ କିମ୍ବା ସଚ୍ଚିଦାନନ୍ଦ ଦେବଙ୍କୁ ଜଣା ନଥିଲା ।"

ପରବର୍ତ୍ତୀ କ୍ରମେ 'ପାର୍ବତୀ' କାବ୍ୟର କିଛି ଅଂଶ ପ୍ରକାଶ ପରେ ରାଧାନାଥଙ୍କୁ ପ୍ରଶଂସାକାରୀ ଓ ଭକ୍ତଙ୍କୁ ନିନ୍ଦାକାରୀ ଲାଗି ଗ୍ରାମ ନାରାୟଣ ଲେଖା ପ୍ରକାଶ କଲେ । ସାହିତ୍ୟ ସମାଲୋଚକମାନେ ଦୁଇଟି ନିର୍ଦ୍ଦିଷ୍ଟ ଗୋଷ୍ଠୀରେ ବିଭକ୍ତ ହେଲେ । ପରସ୍ପରର ମତାମତର ପୃଷ୍ଠପୋଷକତା ପାଇଁ 'ଇନ୍ଦ୍ରଧନୁ' ଓ 'ବିଜୁଳୀ' ପତ୍ରିକାର ଆବିର୍ଭାବ ହେଲା । ନୀଳମଣି ବିଦ୍ୟାରତ୍ନ ତଥା ସୂଢ଼ଲଦେବ ରାଧାନାଥଙ୍କ ସପକ୍ଷରେ ଯଥାସାଧ୍ୟ ସମର୍ଥନ ଯୋଗାଇଲେ । ଏହି ବିବାଦୀୟ ପରିସ୍ଥିତିରେ ଶ୍ରାବଣ ମାସର 'ହିତୈଷିଣୀ'ର ଗୋଟିଏ ସଂଖ୍ୟାରେ 'ପାର୍ବତୀ' କାବ୍ୟରେ ବର୍ଣ୍ଣିତ 'କୌଶଲ୍ୟା' ଓ ଗଙ୍ଗେଶ୍ୱରଙ୍କ ଅବୈଧ ପ୍ରଣୟ ପ୍ରକାଶିତ ହେଲା । ରାଧାନାଥ ବିରୋଧୀଙ୍କୁ ଏହା ଏକ ସୁବର୍ଣ୍ଣସୁଯୋଗ ଥିଲା । ଯେତେବେଳେ ସୂଢ଼ଲଦେବ ଏହି ଅଂଶଟି ପାଠକଲେ । ସେ ଗଭୀର ମନସ୍ତାପକୁ ବର୍ଣ୍ଣନା କରି ଜଳନ୍ଧର ଲେଖିଥିଲେ—"ସୂଢ଼ଲ ଦେବ ନୀଳମଣି ବିଦ୍ୟାରତ୍ନଙ୍କୁ ତିରସ୍କାର କଲେ, ଏବଂ ପ୍ରକାଶ କଲେ— ଯାହାଙ୍କର ପକ୍ଷ ସମର୍ଥନ କରିବାକୁ ଆମ୍ଭେମାନେ ଅର୍ଥବ୍ୟୟ ଓ ମାନସିକ ପରିଶ୍ରମ କଲୁ, ସେ ଆମ୍ଭମାନଙ୍କ ମୁହଁରେ କାଳି ଲଗାଇବାକୁ ତିଳେମାତ୍ର ସଙ୍କୋଚବୋଧ କଲେନାହିଁ । ଅବୈଧ ଅଶ୍ଳୀଳ ଇଙ୍ଗିତଦ୍ୱାରା ଏହାଙ୍କର ଲେଖନୀ ଭକ୍ତକାବ୍ୟର ପ୍ରକାଶ୍ୟ ଅଶ୍ଳୀଳ ଲେଖାକୁ ବଳିଗଲା । ତା'ଛଡ଼ା ଏହା ଯେ କେବଳ ତାଙ୍କ ପକ୍ଷ ସମର୍ଥନକାରୀଙ୍କର ମୁଖ ବନ୍ଦକଲା, ତା ନୁହେଁ, ପୁଣି ଉତ୍କଳର ପବିତ୍ର ବଂଶ ପୁଣ୍ୟଶ୍ଳୋକ ଗଙ୍ଗେଶ୍ୱରଙ୍କ ମୁଖରେ କଳଙ୍କ-କାଳିମା ଲେପନ କଲା ।"

ପରନ୍ତୁ ଦେଓଗଡ଼ (ବାମଣ୍ଡା)ର ରାଜବଂଶ ଗଙ୍ଗବଂଶୀୟ । ନିଜବଂଶର ଗାରିମା ସମ୍ବନ୍ଧରେ ସୂଢ଼ଲଦେବ ସର୍ବଦା ସଚେତନ ଥିଲେ । ତେଣୁ ନିଜବଂଶର ପୂର୍ବଜଙ୍କୁ ଅଗମ୍ୟାଗମନ ଦୋଷରେ ଦୋଷୀ କରାଇବା କେବେହେଲେ ସୂଢ଼ଲଦେବଙ୍କ ଭଳି ମହାମନା ବ୍ୟକ୍ତିଙ୍କ ସ୍ୱପ୍ନରେ ସୁଦ୍ଧା ଆସି ନଥିବ । ଏହି ପରିପ୍ରେକ୍ଷୀରେ ରାଧାନାଥଙ୍କ କୃତ କର୍ମକୁ ଅନ୍ୟଉପରେ ଲଦିଦେବା କେତେଦୂର ଯଥାର୍ଥ ବୋଲି ସେ ଏହି ପ୍ରବନ୍ଧରେ ପ୍ରଶ୍ନ କରିଥିଲେ । ତାହାଙ୍କ ଭାଷାରେ—"କାବ୍ୟର ନିନ୍ଦାସ୍ତୁତି, ଯଶ ଅପଯଶ କବିର ପ୍ରାପ୍ୟ, ଅନ୍ୟର ନୁହେଁ. ଉତ୍ସାହ ଦାତା, ପ୍ରକାଶକ, ମୁଦ୍ରାକର, ପାଠକ, ସାହିତ୍ୟିକ, ସମାଲୋଚକ ପ୍ରଭୃତି ଯେପରି କାବ୍ୟର ରସମାଧୁରୀ ଓ ରଚନା ପରିପାଟି ନିମନ୍ତେ ଦାୟୀ ନୁହନ୍ତି, ସେହିପରି ପାତ୍ରପାତ୍ରୀଙ୍କର ଦୋଷାଦୋଷ ନିମନ୍ତେ ଦାୟୀ ନୁହନ୍ତି । କବିଙ୍କୁ ରକ୍ଷା କରିବାକୁ ଯାଇ ଅନ୍ୟ ଉପରେ ଦୋଷାରୋପ କରିବାକୁ ଗଲେ କବିର ତ ମହତ୍ତ୍ୱ ବଢ଼େନାହିଁ, ବରଂ ନ୍ୟୁନ ହୁଏ ।"

ସର୍ବଶେଷରେ ସେ ଦୃଢ଼ସ୍ୱରରେ ଘୋଷଣା କରିଥିଲେ ଯେ ସୂତ୍ରଲଦେବଙ୍କ ଉପରେ ପାର୍ବତୀକାବ୍ୟର ବିଷୟବସ୍ତୁ ସମ୍ବନ୍ଧେ ଦୋଷାରୋପ କରିବା ସଂପୂର୍ଣ୍ଣ ମିଥ୍ୟା ଉପରେ ଆଧାରିତ ।

## ମେଘଦୂତ

ଜଳନ୍ଧର ଦେବଙ୍କର ସଂସ୍କୃତ ସାହିତ୍ୟରେ ପର୍ଯ୍ୟାପ୍ତ ପ୍ରବେଶ ଥିଲା । ରାମାୟଣ, ମହାଭାରତ, ବେଦ ପୁରାଣ ଓ ବିଭିନ୍ନ କାବ୍ୟ ପାଠପୂର୍ବକ ସେସବୁର ଆଲୋଚନା ପାଇଁ ସେ କେବେ କେବେ ଚେଷ୍ଟା କରୁଥିଲେ । ବିଶେଷତଃ ଯେଉଁସବୁ ସ୍ଥାନରେ ଅର୍ଥଗତ ବୈଷମ୍ୟ ପରିଲକ୍ଷିତ ହେଉଥିଲା, ସେ ବିଷୟରେ ସେ ଯୁକ୍ତିସଙ୍ଗତ ଭାବରେ ଆଲୋଚନା କରୁଥିଲେ । ଆଲୋଚ୍ୟ ଆଲୋଚନାଟି କାଳିଦାସଙ୍କ 'ମେଘଦୂତମ୍' କାବ୍ୟର ଏକାଧିକ ଟୀକା ଉପରେ ଆଧାରିତ । ବିଭିନ୍ନ ଟୀକାକାର ମାନଙ୍କଦ୍ୱାରା ଯେଉଁ ମତଭିନ୍ନତା ପରିଲକ୍ଷିତ ହୋଇଥାଏ, ତାହାଦ୍ୱାରା ପାଠକମାନେ କାବ୍ୟର ଅର୍ଥାନ୍ୱେଷଣରେ ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି । ସେହିସବୁ ମତଭିନ୍ନତାକୁ ଏହି ପ୍ରବନ୍ଧରେ ଆଲୋଚନା କରାଯାଇଥିଲା ।

ପ୍ରଥମତଃ ଯେଉଁ ମେଘକୁ ଲକ୍ଷ୍ୟକରି ଯକ୍ଷ ବିରହ ବେଦନାରେ ବ୍ୟାକୁଳ ହୋଇଛୁ, ସେହି ମେଘର ସମୟ ସମ୍ପର୍କରେ ସାଧାରଣତଃ ଟୀକାକାରମାନେ ଆଷାଢ଼ମାସର ପ୍ରାରମ୍ଭ କାଳକୁ ଗ୍ରହଣ କରିଥାନ୍ତି । କିନ୍ତୁ ପ୍ରାବନ୍ଧିକ ଏହି ସମୟ ନିର୍ଣ୍ଣୟ ସହିତ ଏକମତ ନଥିଲେ । ତାହାଙ୍କ ମତରେ କାଳିଦାସ ଯେଉଁ ଆଷାଢ଼ସ୍ୟ, ପ୍ରଥମ ଦିବସେ' ବୋଲି ଲେଖିଛନ୍ତି, ତାହା ପ୍ରକୃତରେ ଆକ୍ଷରିକ ଭାବେ ଆଷାଢ଼ ମାସର ପ୍ରାରମ୍ଭ ପରେ ବୋଲି ଗ୍ରହଣ କଲେ ତାହା ପ୍ରାସଙ୍ଗିକ ହେବ ନାହିଁ । କାରଣ ସାଧାରଣତଃ ଭାରତରେ ମୌସୁମୀ ପ୍ରବାହ ଜ୍ୟେଷ୍ଠ ମାସର ଶେଷ ଆଡ଼କୁ ଆରମ୍ଭ ହୋଇଥାଏ । ତେଣୁ ମୌସୁମୀ ପ୍ରବାହ ସହିତ ଯେଉଁ 'ମେଘ' ଦେଖାଦିଏ, ତାହା ସାଧାରଣତଃ ଭୟଙ୍କର ଆକାର ଧାରଣ କରିଥାଏ । କାଳିଦାସ ଯେଉଁ ମେଘକୁ କ୍ରୀଡ଼ାସକ୍ତ ଗଜରାଜ ରୂପେ ବର୍ଣ୍ଣନା କରିଛନ୍ତି, ତାହା କେବେ ବର୍ଷାଋତୁର ମେଘ ହୋଇ ନପାରେ । କାରଣ ସେତେବେଳେ ମେଘର ସେ ଭୟଙ୍କରୀ ରୂପ ସାଧାରଣଭାବେ ନଷ୍ଟ ହୋଇଯାଇଥାଏ । ମେଘର ସମୟ ନିର୍ଣ୍ଣୟରେ ପ୍ରାବନ୍ଧିକ ଯେଉଁସବୁ ଯୁକ୍ତି ଉପସ୍ଥାପନ କରିଥିଲେ, ତାହା ପ୍ରକୃତରେ ପ୍ରଣିଧାନଯୋଗ୍ୟ, ଯଥା— ''ବାତ୍ୟା ବିତାଡ଼ିତ ନୂତନ ମେଘ ଅତି ଦ୍ରୁତବେଗରେ ଗମନ କରେ ଏବଂ ଦୂତ ହେବାର ଉପଯୁକ୍ତ । ଶ୍ରାବଣମାସର ମେଘାଚ୍ଛନ୍ନ ମେଘ ତାଦୃଶ ଭାବୋତ୍ପାଦକ ନୁହେଁ,

ନୂତନ ମେଘହିଁ ବିଦ୍ୟୁଦ୍ବତ୍ତବନ୍ତ ଏବଂ ଇନ୍ଦ୍ରଧନୁ-ଶୋଭି ଅଟେ । ବଳାକାପଙ୍କ୍ତି ନୂତନ ମେଘ ବକ୍ଷରେ ଶୁକ୍ଳ ପୁଷ୍ପମାଳା ଭଳି ଶୋଭା ପାଆନ୍ତି । ପ୍ରଥମ ମେଘାଗମରେ ସେମାନଙ୍କର ଗର୍ଭାଧାନ ହୁଏ । ଶ୍ରାବଣମାସରେ ବକମାନେ ଶାବକ ପାଳନ କରିବାରେ ବ୍ୟସ୍ତଥାନ୍ତି । କ୍ରୀଡ଼ାରତ ହେବାକୁ ସେମାନଙ୍କର ଅବସର ନାହିଁ ?

ହଂସମାନେ ବର୍ଷାଗମରେ ମାନସସରୋବରକୁ ଯିବାର କଥା ପ୍ରସିଦ୍ଧି ଅଛି । × × ×

ମୟୂରଗଣ ନୂତନ ମେଘ ଦେଖି ଉତ୍ଫୁଲ୍ଲ ମାନସରେ ନୃତ୍ୟ କରନ୍ତି ଏବଂ ବର୍ଷା ପୂର୍ବରୁ ବା ପ୍ରଥମ ବର୍ଷାରେ ସେମାନଙ୍କର ଦୀର୍ଘ ପୁଚ୍ଛଭାର ତ୍ୟାଗ କରନ୍ତି । × ×

ଉତ୍ତପ୍ତ ଭୂମିରେ ଜଳ ପଡ଼ିଲେ ଗନ୍ଧ ନିର୍ଗତ ହୁଏ । ଆର୍ଦ୍ର ଭୂମିରେ ଯେତେ ଜଳବୃଷ୍ଟି ହେଲେ ମଧ୍ୟ ଗନ୍ଧ ନିର୍ଗତ ହୁଏ କି ?

ଉପର୍ଯ୍ୟୁକ୍ତ କାରଣଗୁଡ଼ିକରୁ କାଳିଦାସଙ୍କ ରଚନାର ପୂର୍ବମେଘର ୨, ୩, ୪ର ଅର୍ଥ ଟୀକାକାରମାନେ ଏହି ମେଘର ସମସ୍ତ ଆଷାଢ଼ ବା ଶ୍ରାବଣରୂପେ ଗ୍ରହଣ କରିବା ଯୁକ୍ତିସଙ୍ଗତ ନୁହେଁ ।

ଯେଉଁ ରାମଗିରି ପର୍ବତରେ ଯକ୍ଷ ଅବସ୍ଥାନ କରୁଥିଲା, ତାହାର ନିର୍ଣ୍ଣୟରେ ମଧ୍ୟ ଟୀକାକାରମାନେ ଭିନ୍ନ ଭିନ୍ନ ମତପୋଷଣ କରନ୍ତି । କେହି କେହି ଏହାକୁ ଚିତ୍ରକୂଟ ଓ ଅନ୍ୟ କେତେକ ମଧ୍ୟ ମଧ୍ୟପ୍ରଦେଶର ସୁରଗୁଜା ରାଜ୍ୟ ଅନ୍ତର୍ଗତ ରାମଗଡ଼କୁ ରାମଗିରି ବୋଲି ଚିହ୍ନିତ କରିଥାନ୍ତି । କିନ୍ତୁ ପ୍ରାବନ୍ଧିକ ଏହି ସବୁ ମତର ତର୍ଜମା କରି ବିଭିନ୍ନ ଭୌଗୋଳିକ କାରଣ ଦର୍ଶାଇ ଏହି ରାମଗିରି ପର୍ବତ ବାସ୍ତବରେ ମହାଦେବ ପର୍ବତ-ଶ୍ରେଣୀର 'ରାମଟେକ୍' ପାହାଡ଼କୁ ଚିହ୍ନିତ କରିଥିଲେ । ଏହାଙ୍କ ମତରେ ଯଦି ଚିତ୍ରକୂଟ କିମ୍ବା ରାମଗଡ଼କୁ 'ରାମଗିରି' ପର୍ବତ ବୋଲି ଗ୍ରହଣ କରାଯାଏ, ତେବେ କାଳିଦାସ ମେଘର ଗତିପଥର ଯେଉଁ ଦୀର୍ଘ ଓ ସୂକ୍ଷ୍ମ ବର୍ଣ୍ଣନା ପ୍ରଦାନ କରିଛନ୍ତି, ତାହା ଫଳପ୍ରଦ ହେବ ନାହିଁ । ଏଥିପାଇଁ 'ମେଘକୁ' କେତେବେଳେ ବକ୍ର ବା କେତେବେଳେ ବିପରୀତ ଗତିରେ ଯିବାକୁ ପଡ଼ିବ । କିନ୍ତୁ ପ୍ରାବନ୍ଧିକ ଯେଉଁ 'ରାମଟେକ୍' ପର୍ବତର ସୂଚନା ଦେଇଥିଲେ, ସେଠାରୁ ମେଘର ଗତିପଥ ବହୁଳାଂଶରେ କାଳିଦାସଙ୍କ ବର୍ଣ୍ଣନାନୁସାରେ ହୋଇ ପାରିବ ।

ଏହି ଗତିପଥର ନିର୍ଦ୍ଦେଶ କରିବାକୁ ଯାଇ ପ୍ରାବନ୍ଧିକ ମେଘ ପଥରେ ପଡ଼ୁଥିବା ଆମ୍ରକୂଟ, ବିନ୍ଧ୍ୟପାଦ, ରେବା, ଦଶାର୍ଣ୍ଣା, ନିର୍ବିନ୍ଧ୍ୟା, ସିନ୍ଧୁ, ଅବନ୍ତୀ, ଶିପ୍ରା, ମନ୍ଦୀରା, ଦେବଗିରି, ବ୍ରହ୍ମାବର୍ତ୍ତି, କୁରୁକ୍ଷେତ୍ର, କନଖଳ, ପ୍ରାଲେୟାଦ୍ରି, କ୍ରୌଞ୍ଚରନ୍ଧ୍ର,

କୈଳାସ ଇତ୍ୟାଦି ସ୍ଥାନର ସାଂପ୍ରତିକ ଅବସ୍ଥିତି ସମ୍ପର୍କରେ ସ୍ୱତନ୍ତ୍ର ମତ ଉପସ୍ଥାପନ କରିଥିଲେ ।

କବି କାଳିଦାସଙ୍କ ଧର୍ମମତ ସମ୍ବନ୍ଧରେ ସୂଚନା ଦେବାକୁ ଯାଇ ପ୍ରାବନ୍ଧିକ କହିଥିଲେ ଯେ ସେ ଶିବଭକ୍ତ ଥିଲେ । କାରଣ 'ମେଘଦୂତମ୍' କାବ୍ୟରେ ଯେଉଁ ଚାରିଗୋଟି ସ୍ଥାନର ବିସ୍ତୃତ ବର୍ଣ୍ଣନା ପ୍ରଦତ୍ତ ହୋଇଛି, ସେସବୁ ହେଲା—ଉଜ୍ଜୟିନୀ, ଦେବଗିରି, କନଖଳ ଓ କୈଳାସ । ଏହି ଚାରିଗୋଟି ସ୍ଥାନରେ ପ୍ରଧାନ ଦେବଦେବୀଙ୍କ ସୂଚନା ଦେଇ ପ୍ରାବନ୍ଧିକ ପ୍ରବନ୍ଧର ଉପସଂହାରରେ ଲେଖିଥିଲେ "ଉଜ୍ଜୟିନୀରେ କବିଙ୍କର ନିତ୍ୟପୂଜ୍ୟ ମହାକାଳ, ଦେବଗିରିରେ ଶିବପୁତ୍ର ସ୍କନ୍ଦ ସଙ୍ଗେ ସଙ୍ଗେ ପୁତ୍ରବତ୍ସଳା ଭବାନୀଙ୍କର ବର୍ଣ୍ଣନା, କନଖଳଠାରେ ଭବାନୀ ସପତ୍ନୀ ଶିବପ୍ରିୟା ଗଙ୍ଗାଙ୍କର କ୍ରୀଡ଼ା ଏବଂ କୈଳାସରେ ହରଗୌରୀ ଯୁଗଳମୂର୍ତ୍ତିଙ୍କର କ୍ରୀଡ଼ାବର୍ଣ୍ଣନା କରିଅଛନ୍ତି । କବି ଚାରିଗୋଟି ପ୍ରଧାନ ଦେବପୀଠର ବର୍ଣ୍ଣନାଦ୍ୱାରା ନିଜେ ଶିବଭକ୍ତ ଥିବାର ପରିଚୟ ଦେଇଅଛନ୍ତି ।"

### ଶିକ୍ଷା ଓ ସମାଲୋଚନା

ଏହି ପ୍ରବନ୍ଧଟି ଦୁଇଟି ଭାଗରେ 'ଉପହାର' ପତ୍ରିକାରେ ୧୯୩୫ ମସିହା ମାର୍ଚ୍ଚ ଓ ଏପ୍ରିଲ୍ ମାସରେ ପ୍ରକାଶିତ ହୋଇଥିଲା । ସମସାମୟିକ ଭାରତୀୟ ଶିକ୍ଷାପଦ୍ଧତିର ବିଭିନ୍ନ ଅବ୍ୟବସ୍ଥା ସମ୍ପର୍କରେ ଆଲୋକପାତ କରିବାକୁଯାଇ ଲେଖକ ବୈଦିକଯୁଗରୁ କ୍ରମାନ୍ୱୟରେ ଭାରତୀୟ ଶିକ୍ଷା ବ୍ୟବସ୍ଥାର ଆଲୋଚନା କରିଥିଲେ । ବୈଦିକ ଯୁଗରେ ଯେତେବେଳେ ଲିପିର ବିକାଶ ହୋଇନଥିଲା, ସେତେବେଳେ ଗୁରୁଶିଷ୍ୟର ପରମ୍ପରା କିପରି ଶ୍ରଦ୍ଧା ଓ ସମ୍ମାନ ଉପରେ ପର୍ଯ୍ୟବସିତ ଥିଲା, ତାହାର ସୂଚନା ସେ ଦେଇଥିଲେ । ସେତେବେଳେ ବିଦ୍ୟାଧ୍ୟୟନ ପାଇଁ ଶିଷ୍ୟ ଗୁରୁଗୃହରେ ଅବସ୍ଥାନ କରୁଥିଲେ । ଗୁରୁଗୃହରେ ଶିଷ୍ୟଗଣ ବ୍ରହ୍ମଚର୍ଯ୍ୟ ପାଳନ କରି ବୌଦ୍ଧିକ ତଥା ଶାରୀରିକ ପରିଶ୍ରମ ଅକ୍ଳାନ୍ତଭାବରେ କରୁଥିଲେ । ଏହି ବ୍ରହ୍ମଚର୍ଯ୍ୟ ପାଳନର ସମୟସୀମା ବାରବର୍ଷରୁ ଛତିଶବର୍ଷ ପର୍ଯ୍ୟନ୍ତ ଥିଲା, ସେତେବେଳେ ଛାତ୍ରମାନେ ବୃକ୍ଷମୂଳରେ ଅଧ୍ୟୟନ କରୁଥିଲେ । ଜଣେ ଜଣେ ଗୁରୁଙ୍କ ନିକଟରେ ସହସ୍ରାଧିକ ଛାତ୍ର ବିଦ୍ୟାଧ୍ୟୟନ କରୁଥିବାର ପ୍ରମାଣ ମିଳେ । ବର୍ତ୍ତମାନ ପରିପ୍ରେକ୍ଷୀରେ ହୁଏତ ଏହା ଅବିଶ୍ୱାସ୍ୟ ।

ଲିପିର ବିକାଶ ଓ ଆଞ୍ଚଳିକ ଭାଷାସମୂହର ସୃଷ୍ଟି ପରେ ଯେତେବେଳେ ବୌଦ୍ଧଧର୍ମର ପ୍ରଚାର ହେଲା, ସେତେବେଳେ ମଧ୍ୟ ଶିକ୍ଷାବ୍ୟବସ୍ଥାର ସାର୍ବଜନୀନତା ପ୍ରାବନ୍ଧିକ ନାଳନ୍ଦା ପ୍ରଭୃତି ଶିକ୍ଷାୟତନର ଧ୍ୱଂସାବଶେଷରୁ ପ୍ରମାଣିତ ବୋଲି ଉଲ୍ଲେଖ କରିଥିଲେ । ସେତେବେଳେ ଗୁରୁଶିଷ୍ୟର ଯେଉଁ ସୁସ୍ଥ ପରମ୍ପରା ଭାରତରେ

ପ୍ରଚଳିତ ଥିଲା, ତାହାଦ୍ୱାରା କେବଳ ଏ ଦେଶରୁ ନୁହେଁ ବିଦେଶରୁ ମଧ୍ୟ ବହୁ ଛାତ୍ର ଆସି ଏଠାରେ ବିଦ୍ୟାର୍ଜ୍ଜନ କରୁଥିଲେ ।

ପରବର୍ତ୍ତୀ କାଳରେ ଶିକ୍ଷାର ସାର୍ବଜନୀନତା ନଷ୍ଟହୋଇ ଶିକ୍ଷା ପ୍ରଣାଳୀର ମଧ୍ୟ ପରିବର୍ତ୍ତନ ହେଲା । ସଂସ୍କୃତ ଭାଷାରେ ଶିକ୍ଷାଦାନ ଓ ତଥା ବର୍ଣ୍ଣଭେଦରେ ଛାତ୍ର ନିର୍ବାଚନ ଦ୍ୱାରା ଶିକ୍ଷା ସଙ୍କୋଚନ ଆରମ୍ଭ ହେଲା । ଟୋଲ ଶିକ୍ଷାର ପ୍ରଚଳନ ହେଲା । ଗ୍ରାମମାନଙ୍କରେ ପ୍ରାକୃତ ଭାଷାର ଯେଉଁ ଚାଟଶାଳୀଗୁଡ଼ିକ ପ୍ରଚଳିତ ହେଲା, ସେଥିପ୍ରତି ପୃଷ୍ଠପୋଷକତାର ଅଭାବ ହେଲା । ଶିକ୍ଷାପଦ୍ଧତି ସହିତ ଧର୍ମବିଦ୍ୱେଷ ଜଡ଼ିତ ହେଲା । ଗୁରୁ ଶିଷ୍ୟ ସମ୍ପର୍କ ବ୍ୟାହତ ହୋଇ ଅତ୍ୟାଚାରର ପରମ୍ପରା ପ୍ରଦର୍ଶିତ ହେଲା । ଏହାପରେ ମୋଗଲ ମୁସଲମାନ ରାଜତ୍ୱରେ ଶିକ୍ଷାକ୍ଷେତ୍ରରେ ଏହି ଅବ୍ୟବସ୍ଥା ସହିତ ବିଦେଶୀ ଉର୍ଦ୍ଦୁ ଓ ପାର୍ଶୀ ଭାଷାର ପ୍ରଚାର ପ୍ରସାର ଆରମ୍ଭ ହେଲା, ଦେଶୀୟ ଭାଷାର ବିକାଶ ବାଧାପ୍ରାପ୍ତ ହେଲା ।

ଇଂରେଜମାନେ ଏ ଦେଶରେ ଶିକ୍ଷାବ୍ୟବସ୍ଥାର ପରିବର୍ତ୍ତନ କରିବାକୁ ପ୍ରୟାସ କରିଥିବାରୁ ଲେଖକ ସେମାନଙ୍କ ଉଦ୍ୟମକୁ ସମର୍ଥନ କରିଥିଲେ । ପାଶ୍ଚାତ୍ୟ ଶିକ୍ଷାପ୍ରଣାଳୀରେ ଛାତ୍ରକୁ ଜୀବନର ଲକ୍ଷ୍ୟ ସ୍ଥିର ପାଇଁ ଯେଉଁ ବିପୁଳ ସୁଯୋଗ ପ୍ରଦତ୍ତ ହେଉଥିଲା, ସେ ବିଷୟରେ ଆଲୋଚନା କରି ଲେଖକ କହିଥିଲେ ଯେ ଭାରତରେ ଛାତ୍ରସମାଜ ସର୍ବଦା ଦିଗ୍‌ଭ୍ରାନ୍ତ । ଶିକ୍ଷାରେ ପରିସମାପ୍ତି ପରେ ସେମାନେ ଲକ୍ଷ୍ୟସ୍ଥାନ ଭାବରେ ଜୀବନଯନ୍ତ୍ରରେ ଅସ୍ୱାଚ୍ଛନ୍ଦ ହଅନ୍ତି । ଏହି ପରିପ୍ରେକ୍ଷୀରେ ଜାତୀୟ ଉନ୍ନତି କେବେ ସମ୍ଭବ ନୁହେଁ ବୋଲି ଉଲ୍ଲେଖ୍ୟ କରି ସେ ପରାମର୍ଶ ଦେଇଥିଲେ —"ଆଜି ଯେ ଛାତ୍ର, କାଲି ସେ ଦେଶର ମୁଖ୍ୟବ୍ୟକ୍ତି ହୋଇପାରେ, ଏହି ଧାରଣା ହୃଦୟରେ ପୋଷଣ କରି ପ୍ରତ୍ୟେକ ଛାତ୍ରର ମାନସିକ ଓ ଶାରୀରିକ ଉନ୍ନତି ନିମନ୍ତେ ଶିକ୍ଷକମାନେ ଯତ୍ନଶୀଳ ହେବା ଉଚିତ । ବୃତ୍ତିଦ୍ୱାରା ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ ସାଧନରେ ଶିକ୍ଷକର ଧର୍ମାଂଶ ନାହିଁ; ଛାତ୍ରର ଉନ୍ନତିକଳ୍ପେ ଶିକ୍ଷକ ତଦତିରିକ୍ତ ଯାହା କରିବେ ସେଥିରେ ତାଙ୍କର ଧର୍ମ ଓ ମହତ୍ତ୍ୱ ଅଛି ।"

ଏହି ପ୍ରବନ୍ଧର ଦ୍ୱିତୀୟ ଭାଗକୁ 'ଶିକ୍ଷାପଦ୍ଧତି' ବୋଲି ନାମିତକରି ଏଥିରେ ଭାରତୀୟ ଶିକ୍ଷା ବ୍ୟବସ୍ଥାର ସଂସ୍କାର ନିମନ୍ତେ କେତେକ ପରାମର୍ଶ ପ୍ରଦାନ କରିଥିଲେ । ସମସାମୟିକ ଭାରତୀୟ ଶିକ୍ଷାପଦ୍ଧତିର ଉନ୍ନତିପାଇଁ ଭାରତରେ ଏକ ଜାତୀୟଭାଷାକୁ ନିର୍ଦ୍ଧାରିତ କରିବାର ଆବଶ୍ୟକତା ଥିଲା । ସେତେବେଳେ ଇଂରେଜୀ ପ୍ରାୟ ଭାରତର ଶିକ୍ଷାର ମାଧ୍ୟମରୂପେ ସ୍ୱୀକୃତ ହୋଇଯାଇଥିଲା । କିନ୍ତୁ ଭାରତୀୟ ଜନଜୀବନର ଏହି ଇଂରାଜୀଭାଷା କେତେକ ସାମଗ୍ରିକ ଉନ୍ନତିର ମାଧ୍ୟମ ହୋଇପାରିବ ନାହିଁ । ଆଞ୍ଚଳିକ

ଭାଷାଗୁଡ଼ିକୁ ଉନ୍ନତକରି ତାହା ମାଧ୍ୟମରେ ଭାରତୀୟ ଶିକ୍ଷାବ୍ୟବସ୍ଥା ପ୍ରଚଳନକଲେ ସାମାଜିକ ଉନ୍ନତି ସମ୍ଭବ । ସେତେବେଳେ ହିନ୍ଦୀକୁ ଜାତୀୟଭାଷା କରିବାପାଇଁ ପ୍ରସ୍ତାବ ଆରମ୍ଭ ହୋଇଥାଏ । ଏହାର ବିରୋଧରେ ପ୍ରାବନ୍ଧିକ ଯାହା ଯୁକ୍ତି ବାଢ଼ିଥିଲେ । ତାହା ବାସ୍ତବରେ ପ୍ରଣିଧାନଯୋଗ୍ୟ— "ଦୁଃଖର ବିଷୟ, ଉଦ୍ୟୋଗୀମାନେ ଏହା ବୁଝୁ ନାହାନ୍ତି । ଇଂରାଜୀ ଭାଷା ସହ ଓଡ଼ିଆ ଭାଷାର ପ୍ରତିଦ୍ୱନ୍ଦିତା ନାହିଁ । ମାତ୍ର ହିନ୍ଦୀଭାଷା ସହିତ ଅଛି । ପ୍ରତିଦ୍ୱନ୍ଦୀ ଦୁଇଗୋଟି ଭାଷା ଏକ ଦେଶର ଭାଷା ହେଲେ ବଳବତ୍ତର ଭାଷାର ପରେ ଜୟ ହେବ, ଏଥିରେ ସନ୍ଦେହ କଣ ? ଏ ଆନ୍ଦୋଳନ ଓଡ଼ିଶା ପ୍ରତି ନିତାନ୍ତ ଅମଙ୍ଗଳସୂଚକ ।"

ବିଜ୍ଞାନ ପ୍ରତି ଛାତ୍ରମାନଙ୍କ ହୃଦୟରେ ଆଗ୍ରହ ଜନ୍ମାଇ ସେମାନଙ୍କୁ ନିର୍ଭିକ ଓ ଜାତୀୟପ୍ରେମୀ ହେବାପାଇଁ ଉତ୍ସାହିତ କରାଇବା ପାଇଁ ଶିକ୍ଷାବ୍ୟବସ୍ଥାର ଆବଶ୍ୟକୀୟ ପରିବର୍ତ୍ତନ କରିବାପାଇଁ ଲେଖକ ପରାମର୍ଶ ଦେଇଛନ୍ତି ।

**ଭାରତୀୟ ସାହିତ୍ୟର ଅଭିବ୍ୟକ୍ତି ଓ ଗତି**

ଏହା ଏକ ସଂକ୍ଷିପ୍ତ ପ୍ରବନ୍ଧ ୧୯୧୪ ମସିହାର 'ସହକାର'ରେ ପ୍ରକାଶିତ ହୋଇଥିଲା । ଏଥିରେ ବିଶ୍ୱର ବିଭିନ୍ନ ଭାଷା ଓ ସାହିତ୍ୟର ଉତ୍ପତ୍ତି ତଥା ବିକାଶ ଉପରେ ସଂକ୍ଷିପ୍ତ ସୂଚନା ପ୍ରଦତ୍ତ ହୋଇଥିଲା । ଭାଷା ଓ ମାନବ ଜାତିର ସୃଷ୍ଟି ସମ୍ବନ୍ଧରେ ଯେଉଁ ଲୋକ ବିଶ୍ୱାସ ପ୍ରଚଳିତ ଅଛି ତାହାର ସମାଲୋଚନା କରି ସେ କହିଥିଲେ— "ତେବେ ନିର୍ଭିକ ଭାବରେ ଏହା ପ୍ରକାଶ କରାଯାଇପାରେ ଯେ ସତରୂପାମନୁଠାରୁ ସମଗ୍ର ମନୁଷ୍ୟ ଜାତିର ଜନ୍ମ ହୋଇନାହିଁ । କିମ୍ବା ଆଦାମ୍ ଇଭ୍‌ଠାରୁ ସମଗ୍ର ସେହିପରି ଋଗ୍‌ବେଦରୁ ବା ବୈଦିକ ଭାଷାରୁ ସମଗ୍ର ଭାଷାର ଉତ୍ପତ୍ତି ହୋଇନାହିଁ, ଏହା ପୌରାଣିକ କଳ୍ପନା, ଏଥିରେ ଆସ୍ଥା ସ୍ଥାପନ ସ୍ୱାଧୀନ ଗବେଷଣାର ଅନ୍ତରାୟ ମାତ୍ର ।"

ସଂସ୍କୃତ ଭାଷା ସମ୍ବନ୍ଧରେ ସେ କହିଛନ୍ତି ଯେ ଏହା ଏକ ଶୁଦ୍ଧଭାଷା ଯାହାକି ଦୀର୍ଘଦିନ ଧରିଅବିକୃତ ଭାବରେ ପ୍ରଚଳିତ ହୋଇଆସିଛି । ସଂସ୍କୃତ ଭାଷାର ସୃଷ୍ଟି ହେବା ପୂର୍ବରୁ ଗାନ୍ଧାର, କାଶ୍ମୀର ଓ ପଞ୍ଜାବ ଇତ୍ୟାଦି ଅଞ୍ଚଳରେ ବୈଦିକଭାଷା ପ୍ରଚଳିତ ଥିଲା । ବିଭିନ୍ନ ବୈୟାକରଣିକମାନଙ୍କ ଦ୍ୱାରା ଯେଉଁ ନୀତିନିୟମ ପ୍ରଣୀତହୋଇ ସଂସ୍କୃତଭାଷା ସୃଷ୍ଟି ହେଲା, ତାହାର ଶୁଦ୍ଧତା କେବଳ ଏହି ଶୃଙ୍ଖଳାର ଅନୁସରଣ ଦ୍ୱାରା ସମ୍ଭବ ହୋଇଛି ବୋଲି ସେ କହିଥିଲେ । ଏହା ଏକ ଅତୁଳନୀୟ ଭାଷା । ବିଭିନ୍ନ ଅଞ୍ଚଳର ବିଦ୍ୱାନମାନେ ଏ ଭାଷାର ଉଜ୍ଜ୍ୱଳତା, ଗମ୍ଭୀରତା ଓଜସ୍ୱିତା ଅନୁଭବକରି ଏହା ପ୍ରତି ଆକୃଷ୍ଟ ହେଲେ । ଫଳରେ ଭାରତର ସବୁ ଅଞ୍ଚଳରେ ଏହି ଭାଷା ପ୍ରସାରିତ ହେଲା ।

ପ୍ରବନ୍ଧର ଶେଷରେ ବିଭିନ୍ନ ପ୍ରାକୃତ ଭାଷାର ବିକାଶ ସମ୍ବନ୍ଧରେ ସେ ଉଲ୍ଲେଖ କରିଛନ୍ତି ।

## ଭଗବଦ୍‌ଗୀତା

ଏହି ପ୍ରବନ୍ଧର ଶିରୋନାମା 'ଭଗବଦ୍ ଗୀତା' ରଖାଯାଇଥିଲେ ମଧ୍ୟ ଗୀତାର କୌଣସି ତାତ୍ତ୍ୱିକ ଆଲୋଚନା ଏଥିରେ ସ୍ଥାନ ପାଇ ନଥିଲା । ଏହି ସଂକ୍ଷିପ୍ତ ରଚନାଟି ଲେଖକଙ୍କ ମନର ଏକ ଅହେତୁକ କୌତୂହଳ ଉପରେ ଆଧାରିତ । ୧୯୧୫ ମସିହା ଆଷାଢ଼ ସଂଖ୍ୟା 'ଉତ୍କଳ ସାହିତ୍ୟ'ରେ ଏହା ପ୍ରକାଶିତ ହୋଇଥିଲା । ଧର୍ମଧାରଣା କ୍ଷେତ୍ରରେ ଭାରତୀୟ ଜନମାନସ ଯେପରି ଯୁକ୍ତିହୀନ ଭାବରେ ଗ୍ରହଣ କରି ନେଇଥାଏ । 'ଭଗବଦ୍‌ଗୀତା'ର ରଚନାମୂହୂର୍ତ୍ତ ସଂପର୍କରେ ମଧ୍ୟ କୌଣସି ପ୍ରଶ୍ନବାଚୀକୁ କେହି କେବେ ବିଚାରକୁ ନେଇ ନଥାନ୍ତି । ପାରମ୍ପରିକ ଭାବେ ଏହା ଭଗବାନ ଶ୍ରୀକୃଷ୍ଣଙ୍କ ମୁଖ ନିଃସୃତ ଏବଂ ମହାଭାରତ ଯୁଦ୍ଧର ପ୍ରାରମ୍ଭ ପୂର୍ବ ମୁହୂର୍ତ୍ତରେ ଯୁଦ୍ଧକ୍ଷେତ୍ରରେ ଏହାର ରଚନା ବୋଲି ସମସ୍ତେ ନିର୍ବିଚାରଭାବେ ଗ୍ରହଣ କରି ନେଇଥାନ୍ତି । କିନ୍ତୁ ଆଲୋଚ୍ୟ ପ୍ରବନ୍ଧରେ ଲେଖକ ଏହିସବୁ ପାରମ୍ପରିକ ବିଶ୍ୱାସ ସଂପର୍କରେ ବିଭିନ୍ନ ପ୍ରଶ୍ନବାଚୀ ଛିଡ଼ାକରିଥିଲେ । ବିଭିନ୍ନ ପ୍ରକାରର ଯୁକ୍ତି ବଳରେ ଏହା ମହାଭାରତର ଏକ ଅଂଶ-ବିଶେଷ ନୁହେଁ ବୋଲି ଦର୍ଶାଇ ସେ କହିଥିଲେ ଯେ ଗୀତାରେ ୧୮ ଅଧ୍ୟାୟ ମଧ୍ୟରେ ଯେଉଁସବୁ ମୋକ୍ଷମାର୍ଗର ଅବତାରଣା କରାଯାଇଛି, ତାହା ଶୁଣି ବା ଅଧ୍ୟୟନ କରି କେହି କେବେ ଆତ୍ମୀୟସ୍ୱଜନଙ୍କ ହତ୍ୟାରେ ପ୍ରବର୍ତ୍ତିତ ହେବା ସମ୍ଭବ ନୁହେଁ । ଏଣୁ ଅର୍ଜୁନ ଶ୍ରୀକୃଷ୍ଣଙ୍କ ମୁଖରୁ ଏହା ଶୁଣିସାରିବା ପରେ ଆତ୍ମୀୟସ୍ୱଜନଙ୍କୁ ମାରିବା ପାଇଁ କିପରି ଉଦ୍ୟତ ହେଲେ ବୋଲି ଲେଖକ ପ୍ରଶ୍ନ ଉଠାଇଥିଲେ ।

'ମହାଭାରତ'ର ଭୀଷ୍ମପର୍ବର 'ଭଗବଦ୍‌ଗୀତା' ଗୋଟିଏ ଉପପର୍ବରୂପେ ସଂଯୋଜିତ । କିନ୍ତୁ ଲେଖକଙ୍କ ମତରେ ଯଦି ଏହି ଅଂଶକୁ ବାଦ ଦିଆଯାଏ, ତେବେ ମୂଳ କଥାବସ୍ତୁର କୌଣସି ଅଙ୍ଗହାନି ହେବ ନାହିଁ । ବାସ୍ତବରେ ପ୍ରାବନ୍ଧିକଙ୍କ ଏହି ମତର ଯଥାର୍ଥତା ରହିଛି । କାରଣ ଓଡ଼ିଆ ଭଳି କେତେକ ଆଞ୍ଚଳିକ ଭାଷାରେ ରଚିତ ମହାଭାରତ ମଧ୍ୟରେ ଭଗବଦ୍‌ଗୀତା ସ୍ଥାନ ନ ପାଇଥିଲେ ମଧ୍ୟ ବିଷୟବସ୍ତୁର କୌଣସି ଅସଙ୍ଗତି ଲକ୍ଷ୍ୟ କରାଯାଏ ନାହିଁ ।

'ଭଗବଦ୍‌ଗୀତା'ର ଅତ୍ୟଧିକ ଆଦର ସମ୍ବନ୍ଧରେ ଭୀଷ୍ମପର୍ବରେ ପ୍ରଦତ୍ତ କାରଣକୁ ଆଲୋଚନା କରି ପ୍ରାବନ୍ଧିକ କହିଛନ୍ତି ଯେ 'ମହାଭାରତ'ର ଭିତ୍ତି ଯେପରି ବୈଦିକ ଉପାଖ୍ୟାନ ଓ ବୈଦିକଯୁଗର ଗଳ୍ପ, ଗୀତାର ଭିତ୍ତି ସେହିପରି ଉପନିଷଦ୍ ସମୂହ । ପ୍ରାବନ୍ଧିକଙ୍କ ମତରେ—"ମହାଭାରତରେ ବେଦ, ବ୍ରାହ୍ମଣ ଓ ଆରଣ୍ୟକର ଉପାଖ୍ୟାନସମୂହ ଦେଖି ପରବର୍ତ୍ତୀ କୌଣସି ଲେଖକ ଉପନିଷଦର ତତ୍ତ୍ୱସମୂହ ମଧ୍ୟ

ମହାଭାରତ ମଧ୍ୟରେ ସନ୍ନିବେଶିତ କରିବାକୁ ଯତ୍ନ କରିଅଛନ୍ତି ଏବଂ କୃଷ୍ଣଙ୍କୁ ଉପଯୁକ୍ତ ଉପଦେଷ୍ଟା ଓ ଅର୍ଜୁନଙ୍କୁ ଶ୍ରୋତା କରି ମହାଭାରତକୁ ବେଦ ଓ ବେଦାନ୍ତଦ୍ୱାରା ପୁଷ୍ଟାଙ୍ଗ କରିବାକୁ ଚେଷ୍ଟା କରିଅଛନ୍ତି ।''

**ମହାଭାରତ**

ଏହା ଏକ ଦୀର୍ଘ ପ୍ରବନ୍ଧ । ପାଞ୍ଚଟି ଭାଗରେ ବିଭକ୍ତ ଏହି ପ୍ରବନ୍ଧଟି ୧୯୧୬ ମସିହାର 'ଉତ୍କଳ ସାହିତ୍ୟ' ପତ୍ରିକାରେ ପାଞ୍ଚଗୋଟି ସଂଖ୍ୟାରେ ଧାରାବାହିକ ଭାବରେ ପ୍ରକାଶିତ ହୋଇଥିଲା । ଭାରତୀୟ ହିନ୍ଦୁମାନଙ୍କର ଅତି ପ୍ରିୟ ଓ ପବିତ୍ରଗ୍ରନ୍ଥ 'ମହାଭାରତ'ର ରଚୟିତା, ରଚନାକାଳ ଓ ଏହାର ବାସ୍ତବ ସତ୍ୟତା ଉପରେ ଏଥିରେ ତାତ୍ତ୍ୱିକ ବିଶ୍ଳେଷଣ କରାଯାଇଥିଲା ।

ପୁରାଣଶାସ୍ତ୍ରର ବିଷୟବସ୍ତୁ ଓ ବର୍ଣ୍ଣନାପ୍ରସଙ୍ଗ ଯେତେ ଅବାସ୍ତବ ଓ କଳ୍ପନା ରଞ୍ଜିତ ହେଲେ ମଧ୍ୟ ଧର୍ମଭୀରୁ ଭାରତବାସୀ ସେ ବିଷୟରେ ପ୍ରକାଶ୍ୟ ସନ୍ଦେହ ପ୍ରଦର୍ଶନ କରିବା ନିମନ୍ତେ କୁଣ୍ଠିତ ହୋଇଥାନ୍ତି । ଫଳରେ ଶହ ଶହ ବର୍ଷଧରି ଏହିଭଳି ଅସଂଖ୍ୟ ଅବାସ୍ତବ ଓ କଳ୍ପନାସର୍ବସ୍ୱ କାହାଣୀ ସମ୍ବଳିତ ବିଭିନ୍ନ ପୁରାଣ ଓ ଉପପୁରାଣକୁ ସତ୍ୟରୂପେ ଆମ୍ଭେମାନେ ମାନିନେଇଛୁଁ । ଏଥିପାଇଁ ପ୍ରାବନ୍ଧିକ ବହୁ ତାତ୍ତ୍ୱିକ ଆଲୋଚନାର ସହାୟତାରେ 'ମହାଭାରତ' ଭଳି ମହାନ ଗ୍ରନ୍ଥର ଅର୍ବାଚୀନତା ଓ ଅଳୀକତାକୁ ପ୍ରମାଣ କରିବା ପାଇଁ ଏକ ନିର୍ଭୀକ ଭୂମିକା ଏହି ପ୍ରବନ୍ଧ ମାଧ୍ୟମରେ ଗ୍ରହଣ କରିଥିଲେ ।

ପ୍ରବନ୍ଧର ପ୍ରଥମ ଭାଗରେ 'ମହାଭାରତ'ର ରଚନାକାଳ ଓ ରଚୟିତାଙ୍କ ସମ୍ବନ୍ଧରେ ଆଲୋଚନା କରାଯାଇଛି । ମହାଭାରତରେ ବର୍ଣ୍ଣିତ ଘଟଣାବଳୀ ଓ ଚରିତ୍ର-ସମୂହ ସାଧାରଣ ନୈତିକ ଜୀବନର ଆଦର୍ଶରୂପେ କେବେ ଗୃହୀତ ହୋଇପାରିବ ନାହିଁ ବୋଲି ଲେଖକ ଦର୍ଶାଇଛନ୍ତି । ଏହାଙ୍କ ମତରେ—''ନୈତିକ ଜୀବନ ଗଠନ କରିବାକୁ ଆମ୍ଭେମାନେ ଉଚ୍ଚ ଆଦର୍ଶ ଅନ୍ୱେଷଣ କରୁଁ । ସାଧାରଣ ନରଦୁର୍ଲଭ ଚରିତ୍ରନିଚୟ ଆମ୍ଭମାନଙ୍କ ଜୀବନକୁ ଉନ୍ନତ କରିବାର ଆଶା ରଖୁଁ । ମାତ୍ର ଭାରତର ଚରିତ ମଧ୍ୟରୁ ଅଧିକାଂଶ ତହିଁର ପରିପନ୍ଥୀ । ହିନ୍ଦୁଜାତିର ଧର୍ମଗ୍ରନ୍ଥ ବୋଲି ପୂଜା ପାଉଥିଲେ ମଧ୍ୟ ମହାଭାରତ ହିନ୍ଦୁଧର୍ମର ପରିପନ୍ଥୀ ।''

'ମହାଭାରତ'ର ମହାନତା ଏହାର ଧାର୍ମିକ, ଆଧ୍ୟାତ୍ମିକ କିମ୍ବା ନୈତିକ ଆଦର୍ଶର ପ୍ରଖ୍ୟାପନ ପାଇଁ ନୁହେଁ । ହୁଏତ ଏହା ଅଧିକାଂଶ ବ୍ୟକ୍ତି ହୃଦୟଙ୍ଗମ କରୁଥିଲେ ମଧ୍ୟ ପ୍ରକାଶ କରିବାକୁ କୁଣ୍ଠିତ ଥାନ୍ତି । କିନ୍ତୁ ଲେଖକ ସ୍ପଷ୍ଟଭାବେ କହିଛନ୍ତି —''ମହାଭାରତକୁ କାବ୍ୟଜଗତରେ ଉଚ୍ଚଆସନ ଦେବାକୁ କାହାରି ଦ୍ୱିଧା ମତ ନାହିଁ । କବିମାନଙ୍କର କଳ୍ପନା ଚାତୁରୀ, ଅସାଧାରଣ ଉଦ୍ଭାବନୀ ଶକ୍ତିକୁ ପ୍ରଶଂସା କରିବାକୁ

କେହି କୁଣ୍ଠିତ ନୁହନ୍ତି । ମାତ୍ର ଏହି ପୁସ୍ତକରେ ଅଶେଷ ଧର୍ମ ଓ ନୀତି ଉପଦେଶ ଥିଲେ ମଧ୍ୟ ଏହାକୁ ଧର୍ମଗ୍ରନ୍ଥ ଓ ନୀତିଗ୍ରନ୍ଥ ବୋଲି ଉଚ୍ଚଆସନ ଦେବାକୁ ଅନେକଙ୍କର ଦ୍ୱିଧା ନିଶ୍ଚୟ ଅଛି । ତେବେ ବ୍ୟକ୍ତ କରିବାକୁ ସାହସ ବଳେ ନାହିଁ ।",

ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ପାଣିନୀ ପ୍ରଣୀତ ବ୍ୟାକରଣରେ କୃଷ୍ଣ ଓ ଅର୍ଜୁନଙ୍କ ନାମୋଲ୍ଲେଖ ଥିବାରୁ କେତେକ ଏହା ତତ୍ପୂର୍ବର ରଚନା ବୋଲି ଗ୍ରହଣ କରନ୍ତି । କିନ୍ତୁ ଲେଖକ କହିଛନ୍ତି, 'ମହାଭାରତ'ର ଭାଷାତାତ୍ତ୍ୱିକ ଅଧ୍ୟୟନ ଏହି ମତକୁ ସମର୍ଥନ କରେ ନାହିଁ । ତେଣୁ କୃଷ୍ଣ ଓ ଅର୍ଜୁନ ପ୍ରଭୃତି କେତେକ ମହାଭାରତୀୟ ଚରିତ୍ରର ନାମୋଲ୍ଲେଖ ଥିଲେ ମଧ୍ୟ ପାଣିନୀଙ୍କ ବ୍ୟାକରଣରେ 'ମହାଭାରତ'ର ରଚନା ସମ୍ବନ୍ଧୀୟ ସୂଚନା କିଛି ନାହିଁ ।

ବ୍ୟାସଦେବ 'ମହାଭାରତ'ର ରଚୟିତା ରୂପେ ଏହି ଗ୍ରନ୍ଥରେ ଉଲ୍ଲେଖ ରହିଛି । କିନ୍ତୁ ଏଥିରେ ବର୍ଣ୍ଣିତ ଅଛି ଯେ ଶୌନକାଦି ଋଷିମାନଙ୍କ ଅନୁରୋଧକ୍ରମେ ବକ୍ତା ସୌତି ଏହି ମହାଭାରତର କାହାଣୀ ବର୍ଣ୍ଣନା କରିଥିଲେ । ସୌତି ମଧ୍ୟ କେବଳ ବୈଶମ୍ପାୟନଙ୍କଠାରୁ ଶୁଣିଥିବା କଥା ବର୍ଣ୍ଣନା କରି ନଥିଲେ । ତାହା ସହିତ ତାଙ୍କ ପିତା ଓ ଦ୍ୱିଜଶ୍ରେଷ୍ଠମାନଙ୍କଠାରୁ ଯାହା ଶ୍ରବଣ କରିଥିଲେ ତାହା ମଧ୍ୟ ବର୍ଣ୍ଣନା କରିଥିଲେ । ଏହି ମହାଭାରତରୁ ବିଭିନ୍ନ ଶ୍ଳୋକ ଉଦ୍ଧାର କରି ପ୍ରବନ୍ଧକ କହିଛନ୍ତି— "ବୋଧହୁଏ ପାଠକଗଣ ହୃଦୟଙ୍ଗମ କରିପାରିଥିବେ ଯେ ଜନ୍ମେଜୟଙ୍କ ସଭାରେ ବୈଶମ୍ପାୟନ ବ୍ୟାସ ରଚିତ ମହାଭାରତ ପାଠ କରି ନଥିଲେ ଏବଂ ସୌତି ଋଷିମାନଙ୍କ ସମକ୍ଷରେ ବ୍ୟାସରଚିତ ଏବଂ ବୈଶମ୍ପାୟନଙ୍କ ଦ୍ୱାରା ପଠିତ ମହାଭାରତ ପାଠ କରି ନଥିଲେ । ଉପରୋକ୍ତ ଉଦ୍ଧୃତାଂଶରୁ ଜଣାଯାଉଛି ଯେ, ମହାଭାରତ ବ୍ୟାସ ରଚିତ ନୁହେଁ କିମ୍ବା ବୈଶମ୍ପାୟନ ରଚିତ ନୁହେଁ ।" ଏହା ବିଭିନ୍ନ ସମୟରେ ବିଭିନ୍ନ ବ୍ୟକ୍ତିଙ୍କ ଦ୍ୱାରା ରଚିତ ହୋଇଥିବା ପ୍ରାବନ୍ଧିକ ବ୍ୟକ୍ତ କରିଅଛନ୍ତି ।

ପ୍ରବନ୍ଧର ଦ୍ୱିତୀୟ ଭାଗରେ 'ମହାଭାରତ'ରେ ସ୍ଥାନ ପାଇଥିବା ବହୁ ଅବିଶ୍ୱାସ୍ୟ ଘଟଣାବଳୀର ଆଲୋଚନା କରାଯାଇଛି । ଯେପରି ବିନା ପୁରୁଷରେ ସ୍ତ୍ରୀର ଗର୍ଭଧାରଣ, ସ୍ତ୍ରୀ ପୁରୁଷର ସହବାସ ମାତ୍ରେ ଶିଶୁର ତତ୍କ୍ଷଣାତ୍ ଜନ୍ମ, ରେତଭକ୍ଷଣ ଦ୍ୱାରା ଶିଶୁ ଗର୍ଭସ୍ଥ ହେବା, ଜଡ଼ପଦାର୍ଥରେ ରେତ ସଞ୍ଚୟ ଦ୍ୱାରା ଶିଶୁର ଜନ୍ମ, ମାଂସପିଣ୍ଡୁଳାକୁ ଖଣ୍ଡ ଖଣ୍ଡ କରି କଳଶରେ ରକ୍ଷା କରିବାଦ୍ୱାରା କଳଶରୁ ଶିଶୁର ଜନ୍ମ ଇତ୍ୟାଦି ବିଷୟବସ୍ତୁର ବିଶ୍ୱାସନୀୟତା କେବେ ନଥିଲେ ମଧ୍ୟ ସାଧାରଣତଃ ଆମେ ସେସବୁକୁ ବିନା ପ୍ରତିବାଦରେ ଗ୍ରହଣ କରିନେଉଛୁଁ । ନରଠାରୁ ଆରମ୍ଭ କରି ମୁନିଋଷି ଓ ଦେବତାମାନଙ୍କର କର୍ମବଶତଃ ଯେଉଁସବୁ ଅବିଚାର ଓ ସ୍ୱେଚ୍ଛାଚାର ଏଥିରେ ସ୍ଥାନ ପାଇଲା, ସେସବୁକୁ ଧର୍ମବାଣୀ ନାମରେ ଆମେ ଗ୍ରହଣ କରିନେଉ । ମହାଭାରତର

ସମସ୍ତ ମହାନ ଚରିତ୍ର ପଛରେ ବହୁ କୁତ୍ସିତ ଓ ନୀତିବିରୁଦ୍ଧ ଇତିହାସମାନ ଥିବାସତ୍ତ୍ୱେ ଆମେ ତା'ର ପ୍ରତିବାଦ କରିନଥାଉ । ଏହିସବୁ ସାମାଜିକ ବ୍ୟଭିଚାରର କେତେକ ଦୃଷ୍ଟାନ୍ତ ଏହି ଭାଗରେ ଆଲୋଚିତ ହୋଇଛି ।

'ମହାଭାରତ'ରେ ବର୍ଣ୍ଣିତ ବିଭିନ୍ନ ପ୍ରକାରର ବିବାହ ପ୍ରଣାଳୀ ସମ୍ବନ୍ଧରେ ପ୍ରବନ୍ଧର ତୃତୀୟ ଭାଗରେ ଆଲୋଚନା କରାଯାଇଛି । ବର୍ତ୍ତମାନ ଶଶ୍ୱର ବିଭିନ୍ନ ଜାତିମାନଙ୍କ ମଧ୍ୟରେ ପ୍ରଚଳିତଥିବା ବହୁପ୍ରକାର ବିବାହ ପ୍ରଥାର ଉଲ୍ଲେଖ ଏହି ଗ୍ରନ୍ଥରେ ରହିଛି । କିନ୍ତୁ ସେହିସବୁ ପ୍ରଥା ମଧ୍ୟରୁ କେତେକ ସଭ୍ୟସମାଜରେ ଗୃହୀତ ନୁହେଁ । କିନ୍ତୁ ମହାଭାରତରେ ଯେଉଁ ଆଦର୍ଶଛାନୀୟ ଚରିତ୍ରମାନ ରହିଛି, ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ବିବାହ ପ୍ରଣାଳୀ ବର୍ତ୍ତମାନର ଘୃଣ୍ୟ ବିବାହ ପ୍ରଣାଳୀଠାରୁ ଅଧିକ ନିମ୍ନସ୍ତରର । ବେଦରେ ବହୁପ୍ରକାରର ବିବାହ ପ୍ରଣାଳୀ ଉଲ୍ଲେଖ ଥିଲେ ମଧ୍ୟ ବହୁ ଭର୍ତ୍ତୃକ ଓ ସ୍ୱେଚ୍ଛାବିହାରିଭିକ ପ୍ରଣାଳୀକୁ ସଭ୍ୟସମାଜର ପରିତ୍ୟକ୍ତ ବୋଲି କୁହାଯାଇଛି । କିନ୍ତୁ ମହାଭାରତରେ ଏହିଭଳି ଘୃଣ୍ୟ ପ୍ରଣାଳୀର ବହୁଳ ଉଦାହରଣ ରହିଛି । ଯଦି ଆମେ ଆମର ପୂର୍ବପୁରୁଷଙ୍କୁ ଏକ ଉନ୍ନତ ଓ ସମୃଦ୍ଧିପୂର୍ଣ୍ଣ ସଭ୍ୟତାର ଅଧିକାରୀ ବୋଲି ଗ୍ରହଣ କରିବା, ତେବେ ସେମାନେ ଏହି ବେଦବିରୁଦ୍ଧ ପ୍ରଣାଳୀର ଅନୁସରଣ କାହିଁକି କରୁଥିଲେ ବୋଲି ସ୍ୱତଃ ପ୍ରଶ୍ନ ଆସେ । ଶେଷରେ ଲେଖକ କହିଛନ୍ତି "ଉକ୍ତ ମର୍ଯ୍ୟାଦା ମଳୟ-ଉପକୂଳବାସୀଙ୍କ ପକ୍ଷରେ କଥଞ୍ଚିତ୍ ଶୋଭନୀୟ ହୋଇପାରେ । ମାତ୍ର ପୃଥିବୀର ଅଦ୍ୱିତୀୟ ଧର୍ମପରାୟଣ ନୀତିନିପୁଣ ହିନ୍ଦୁଜାତିରେ କି ଏହା ସମ୍ଭବପର ? ଆମ୍ଭମାନଙ୍କର ନୀତିଶାସ୍ତ୍ର ମହାଭାରତରେ ପୁଣି ଏହି ପ୍ରଥାଗୁଡ଼ିକ ସନାତନ ଧର୍ମ ବୋଲି ଲେଖାଅଛି । ଏହା ଯେବେ ଧର୍ମ, ସ୍ୱର୍ଗଫଳପ୍ରଦ, ଏହା ଯେବେ ମୋକ୍ଷଦ, ତେବେ ନରକ କାହିଁ, ପାପ କାହିଁ, ଅଧର୍ମ କାହିଁ ?"

'ଉତ୍କଳ ସାହିତ୍ୟ'ରେ ମହାଭାରତ ସମ୍ବନ୍ଧୀୟ ଏହି ଲେଖା ପ୍ରକାଶ ପାଇବା ପରେ କେତେକ ପାଠକଙ୍କ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା । ଫଳରେ ପ୍ରବନ୍ଧର ଚତୁର୍ଥ ଭାଗରେ ଏ ବିଷୟ ସୂଚନା ଦେଇ ପ୍ରାବନ୍ଧିକ ଅନ୍ୟ କେତେକ ଅବିଶ୍ୱାସ୍ୟ ଘଟଣାର ଆଲୋଚନା ଏଥିରେ କରିଅଛନ୍ତି । ଗୀତାରେ ଅଛି ଅର୍ଜୁନ କୃଷ୍ଣଙ୍କୁ କହୁଛନ୍ତି ଯେ ଯୁଦ୍ଧରେ ପୁରୁଷମାନେ ହତହେବା ପରେ ସ୍ତ୍ରୀମାନେ ଅନ୍ୟପୁରୁଷଙ୍କ ସହିତ ସହବାସକରି ଯେଉଁ ସନ୍ତାନ ଉତ୍ପତ୍ତି କରିବେ ସେମାନେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଜାତିରେ ବିଭକ୍ତ ହେବେ । ବେଦରେ କ୍ଷତ୍ରିୟଙ୍କୁ ବିରାଟ ପୁରୁଷଙ୍କ ବାହୁଭାବରେ ବର୍ଣ୍ଣନା କରାଯାଇଛି । ସେହି କ୍ଷତ୍ରିୟଙ୍କୁ ଥର ଥର କରି ଏକବିଂଶଥର ପରଶୁରାମ ନିର୍ମୂଳ କରିଥିଲେ । ଏଠାରେ ଲେଖକ ପ୍ରଶ୍ନ ଉଠାଇଛନ୍ତି ଯେ ବର୍ତ୍ତମାନର ଯେଉଁ କ୍ଷତ୍ରିୟ, ସେମାନେ ପ୍ରକୃତରେ ବେଦବର୍ଣ୍ଣିତ ବିରାଟ ପୁରୁଷଙ୍କ ବାହୁ ନା ପରବର୍ତ୍ତୀ ବର୍ଣ୍ଣଶଙ୍କର ? ସେ କ୍ଷୋଭର ସହିତ କହିଛନ୍ତି—"ମହାଭାରତକୁ କାଳ୍ପନିକ କାବ୍ୟ ବୋଲିବାକୁ

ଭସ୍ମ କରନ୍ତି, ମାତ୍ର ନିଜର ପୂର୍ବପୁରୁଷମାନଙ୍କୁ ବର୍ଣ୍ଣଶଙ୍କର ବୋଲିବାକୁ ଟିକେ ସଙ୍କୋଚବୋଧ କରନ୍ତି ନାହିଁ । କି ଲଜ୍ଜାର କଥା । ଯେଉଁ ମହାଭାରତ ଗ୍ରନ୍ଥରେ ପୂର୍ବପୁରୁଷଙ୍କର ନିନ୍ଦା କରେ, ଅପଯଶ ବର୍ଣ୍ଣନା କରେ, ସେ ପୁଣି ଶ୍ରବଣଯୋଗ୍ୟ, ପୂଜା ଯୋଗ୍ୟ ? ଭାରତବାସୀଙ୍କଠାରେ, ପୁରାଣ ବିଶ୍ୱାସୀଙ୍କଠାରେ ସବୁ ଶୋଭାପାଏ ।

କେତେକ ଋଷିମାନଙ୍କ ନାମ ବେଦରେ, ମହାଭାରତରେ ତଥା ରାମାୟଣରେ ଉଲ୍ଲେଖ ରହିଛି । ତାହାହେଲେ ବଶିଷ୍ଠ ବିଶ୍ୱାମିତ୍ରଙ୍କ ଭଳି ଋଷିମାନଙ୍କର ପରମାୟୁ ସମ୍ପର୍କରେ ମଧ୍ୟ ଲେଖକ ପ୍ରଶ୍ନ ଉଠାଇଛନ୍ତି । ପୁରାଣବର୍ଣ୍ଣିତ ଋଷିମାନଙ୍କ ଚରିତ୍ରରେ କ୍ରୋଧ, ମୋହ, ଚାରିତ୍ରିକ ସ୍ଖଳନ ଇତ୍ୟାଦିର ବହୁ ବର୍ଣ୍ଣନା ପରିଲକ୍ଷିତ ହୋଇଥାଏ । ବିଶେଷକରି ମହାଭାରତର ଅଳ୍ପ କେତୋଟି ଚରିତ୍ରକୁ ବାଦ୍ ଦେଲେ ପ୍ରାୟ ସମସ୍ତ ସ୍ମରଣୀୟ ଚରିତ୍ରମାନଙ୍କଠାରେ ଏହିସବୁ ଅମାନବିକ ଦୋଷଦୁର୍ବଳତା ପରିଲକ୍ଷିତ ହୋଇଥାଏ । ପ୍ରାବନ୍ଧିକ ବାସ୍ତବ ଦୃଷ୍ଟିକୋଣରୁ ବିଚାରକରି ନିର୍ଭୀକ ଭାବରେ ଉଲ୍ଲେଖ କରିଛନ୍ତି—"ମହାଭାରତୋଲିଖିତ ବ୍ୟକ୍ତିମାନଙ୍କ ମଧ୍ୟରୁ ଦୁଇଚାରିଜଣ ଛଡ଼ା ପ୍ରାୟ ସମସ୍ତେ କୌଣସି ପ୍ରକାରେ ହେଲେ ଦୋଷଜଡ଼ିତ । ଚନ୍ଦ୍ର ଜଣେ ଆମ୍ଭମାନଙ୍କର ଦେବତା, ସେ ଗୁରୁପତ୍ନୀ ହରଣ କରିବା ଦୋଷରେ ଲିପ୍ତ । ଇନ୍ଦ୍ର ଦେବରାଜ, ଆମ୍ଭମାନଙ୍କର ଜଣେ ଦେବତା, ସେ ମଧ୍ୟ ଗୁରୁପତ୍ନୀ ହରଣକରି ସହସ୍ର ଭଗ୍‌ବାନ ହୋଇ ଅଛନ୍ତି । ବ୍ରହ୍ମା ଆମ୍ଭମାନଙ୍କର ସର୍ଜକ, ସେ ମଧ୍ୟ ଅଗମ୍ୟାଗମନ ଦୋଷରେ ଲିପ୍ତ । ମହର୍ଷି ଭରଦ୍ୱାଜ ଗଙ୍ଗାତୀରରେ ଘୃତାଚୀ ଅପ୍‌ସରାର ବସନ ପରିବର୍ତ୍ତନ କରିବାର ଦେଖି କାମ ମୋହିତ ହୋଇ ଊର୍ଦ୍ଧ୍ୱରେ ତା'ର ଯଥେଷ୍ଟ ପରିଚୟ ଦେଇଥିଲେ । ବିଭାଣ୍ଡକ ସ୍ୱବେଶ୍ୟାର ପବନବିକ୍ଷିପ୍ତ ବସନାନ୍ତରାଳରେ ସ୍ତନକନକ ଦେଖିପାରି ତପୋବନରେ ରେତବିସର୍ଜନ କରିଥିଲେ । ଆଜନ୍ମ ବ୍ରହ୍ମଚାରୀ ଋଷ୍ୟଶୃଙ୍ଗ ସ୍ତନ ଶମ୍ଭୁର ପୂଜା କରି ବ୍ରହ୍ମଚର୍ଯ୍ୟର ଯଥେଷ୍ଟ ପରିଚୟ ଦେଇଥିଲେ ।"

ପ୍ରବନ୍ଧର ଅନ୍ତିମ ଭାଗରେ ଲେଖକ 'ମହାଭାରତ' କାହାଣୀଗୁଡ଼ିକର ପ୍ରାଚୀନତା ସମ୍ପର୍କରେ ଆଲୋଚନା କରିଅଛନ୍ତି । ସେ ମତ ଦେଇଛନ୍ତି ଯେ ଏହିସବୁ କାହାଣୀ ମଧ୍ୟରୁ ଅଧିକାଂଶ ବେଦରଚନା ପୂର୍ବରୁ ଲୋକମୁଖରେ ବିକ୍ଷିପ୍ତ ଭାବରେ ପ୍ରଚଳିତ ଥିଲା । ସେଥିମଧ୍ୟରୁ କେତେକ କାହାଣୀ ବେଦରେ ଲିପିବଦ୍ଧ ହୋଇଛି । ତେଣୁ ମହାଭାରତ ଯୁଦ୍ଧର ସମସାମୟିକଭାବେ ଏହି ଗ୍ରନ୍ଥ ରଚନା ହୋଇନାହିଁ ବୋଲି ସେ ଦୃଢ଼ ମତ ପୋଷଣ କରିଛନ୍ତି । ଏ ସମ୍ପର୍କରେ ସେ ବେଦରେ ବର୍ଣ୍ଣିତ କେତେକ ଚରିତ୍ର ଓ କାହାଣୀ ସହିତ ମହାଭାରତର ଚରିତ୍ର ଓ କାହାଣୀର ସାମ୍ୟ ଦର୍ଶାଇଛନ୍ତି ।

ସାଧାରଣତଃ ବ୍ୟାସଙ୍କୁ ଆମ୍ଭେମାନେ ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତି ଭାବରେ ଗ୍ରହଣ କରୁ ଏବଂ ବିଶ୍ୱାସ କରୁ ଯେ ତାହାଙ୍କ ଦ୍ୱାରା ମହାଭାରତାଦି ପୁରାଣ ରଚିତ । କିନ୍ତୁ ପ୍ରାବନ୍ଧିକ

ପ୍ରମାଣ ସହିତ 'ବ୍ୟାସ' ଶବ୍ଦ କେବେ ବ୍ୟକ୍ତିବାଚକ ନୁହେଁ ବୋଲି ଦର୍ଶାଇଛନ୍ତି । ଯେଉଁ ବ୍ୟକ୍ତି ବେଦ ବିଭାଗ କରନ୍ତି, ସେ ବ୍ୟାସ । ଏ ହିସାବରେ ସ୍ୱୟଂ ବ୍ରହ୍ମା, ବଶିଷ୍ଠ ପ୍ରଭୃତି ଅଠାଇଶଜଣ ଅତୀତ ବ୍ୟାସ— ପୁଣି ଭବିଷ୍ୟତରେ ଦ୍ରୌଣି ପ୍ରଭୃତି ବ୍ୟାସ ହେବେ ବୋଲି ସେ କହିଛନ୍ତି । ଏହାବ୍ୟତୀତ 'ବ୍ୟାସ' ଶବ୍ଦର ଅନ୍ୟ ଏକ ଅର୍ଥ ଦେବାକୁ ଯାଇ ସେ କହିଛନ୍ତି— "ଯେଉଁ ବିପ୍ର ବିସ୍ପଷ୍ଟ ସ୍ପଷ୍ଟାକ୍ଷର ପଦଯୁକ୍ତ କଳସ୍ୱର-ସମାଯୁକ୍ତ, ରସଭାବ ସମନ୍ୱିତ ସୁବୋଧ, ବେଦ ବ୍ରାହ୍ମଣାଦି ଗ୍ରନ୍ଥକୁ ସଂଗ୍ରଥିତ ପୁରାଣାଦି ଗ୍ରନ୍ଥ ପ୍ରକାଶକରେ ସେ ବ୍ୟାସ ।" ଏଣୁ ଏହି ହିସାବରେ ସମସ୍ତ ପୁରାଣ ଲେଖକଙ୍କୁ ବ୍ୟାସ ବୋଲି କୁହାଯାଇପାରେ ।

ବେଦରେ ଉଲ୍ଲେଖ ଥିବା ବ୍ୟାସ, ଦେବକୀ ପୁତ୍ର କୃଷ୍ଣ, ଶକୁନ୍ତଳା, ଭରତ ଇତ୍ୟାଦି ଚରିତ୍ର ସମୂହର ଆଲୋଚନା କରି ଶେଷରେ ବେଦରେ ନଥିବା ଓ ମହାଭାରତରେ ଥିବା କେତେକ ନାମକୁ ରୂପକାର୍ଥରେ ବ୍ୟବହୃତ କରାଯାଇଛି ବୋଲି ସେ ସପ୍ରମାଣ ଉଲ୍ଲେଖ କରିଛନ୍ତି । ଯେପରି— "ଗରୁଡ଼ ସମ୍ବନ୍ଧରେ ୧୦, ୧୨ ଗୋଟି ଅଧ୍ୟାୟ ମହାଭାରତର ଆଦିପର୍ବରେ ଅଛି । ଗରୁଡ଼ ବିନତାର ପୁତ୍ର । ବିନତା କଶ୍ୟପଙ୍କର ସ୍ତ୍ରୀ । × × × ବିନତାଠାରୁ ଅରୁଣ ଓ ଗରୁଡ଼ଙ୍କର ଜନ୍ମ । ଏହି ତିନିଗୋଟି ନାମ ବିଶୁଦ୍ଧ କବି କଳ୍ପନା । ବିନତା ଦୁଇଗୋଟି ଅଣ୍ଡା ପ୍ରସବ କଲେ । ପାଞ୍ଚଶତ ବର୍ଷରେ ଅଣ୍ଡାରୁ ଛୁଆ ପ୍ରସବ ନ ହେବାରୁ ଦେଖି ବିନତା ଗୋଟିଏ ଅଣ୍ଡା ବିଦୀର୍ଣ୍ଣ କଲେ ଏବଂ ଅପୂର୍ଣ୍ଣାଙ୍ଗ ଗୋଟିଏ ପୁତ୍ର ଦେଖିଲେ । ଏହି ଅପୂର୍ଣ୍ଣାବସ୍ଥ ପୁତ୍ରର ନାମ ଅରୁଣ । ପୁଣି ପାଞ୍ଚଶତ ବର୍ଷ ପରେ ଅନ୍ୟ ଅଣ୍ଡାରୁ ଗରୁଡ଼ ଜନ୍ମ ହେଲେ । × × ଆମ୍ଭେମାନେ ଜ୍ୟେଷ୍ଠଭ୍ରାତା ଅରୁଣଙ୍କୁ ସୂର୍ଯ୍ୟୋଦୟ ପୂର୍ବ ରକ୍ତାଭା ଏବଂ କନିଷ୍ଠ ଗରୁଡ଼ଙ୍କୁ ସ୍ୱୟଂ ସୂର୍ଯ୍ୟ ବୋଲି ବୁଝୁଅଛୁ ।"

ପ୍ରାବନ୍ଧିକ ମହାଭାରତାଦି ଗ୍ରନ୍ଥରୁ କେତେକ ଉଦ୍ଧୃତିସହି ଗରୁଡ଼ ଯେ ସୂର୍ଯ୍ୟ ତାହା ପ୍ରମାଣ କରାଇବାକୁ ଚେଷ୍ଟା କରିଅଛନ୍ତି ।

ଏହି ଦୀର୍ଘ ପ୍ରବନ୍ଧ ମଧ୍ୟରେ ଲେଖକଙ୍କ ବହୁ ପାଠିତା ଓ ବିଦ୍ୱତ୍ତାର ଦୃଷ୍ଟାନ୍ତ ମିଳିଥାଏ । ଯେଉଁଭଳି ଦାର୍ଶନିକ ଭାବରେ ସେ ବେଦ ପ୍ରଭୃତି ଶାସ୍ତ୍ରମାନଙ୍କରୁ ବହୁ ଉଦାହରଣ ସହିତ ମହାଭାରତର ବିଷୟବସ୍ତୁକୁ ନିଛକ କବିକଳ୍ପନା ପ୍ରସୂତ ବୋଲି ପ୍ରମାଣିତ କରିବା ପାଇଁ ଚେଷ୍ଟା କରିଛନ୍ତି, ତାହା ବାସ୍ତବରେ ପ୍ରଶଂସାର୍ହ ।

## ଯୁଦ୍ଧ ଓ ଗୀତା

'ଭକ୍ତପ୍ରଦୀପ' ପତ୍ରିକାର ସମ୍ପାଦକଙ୍କ ଅନୁରୋଧ କ୍ରମେ ଏହି କ୍ଷୁଦ୍ର ପ୍ରବନ୍ଧଟି ରଚିତ ହୋଇଛି । ଲେଖକ ଏଥିରେ ଗୀତାର ମହତ୍ତ୍ୱ ତଥା ମହାଭାରତ ସହିତ

ଏହାର ସଂଯୋଗହେତୁ ଏହି ମହତ୍ତ୍ୱର ହାନି ବିଷୟ ଉଲ୍ଲେଖ କରିଅଛନ୍ତି । କୁରୁକ୍ଷେତ୍ରର ସମର ପ୍ରାଙ୍ଗଣରେ ଯୁଦ୍ଧୋଦ୍ୟତ ଅସଂଖ୍ୟ ସୈନ୍ୟସାମନ୍ତଙ୍କ ମଧ୍ୟରେ ଗୀତାର ସୃଷ୍ଟି ଏବଂ ଏହା ଭଗବାନ ଶ୍ରୀକୃଷ୍ଣଙ୍କ ମୁଖନିଃସୃତ ବୋଲି ସମସ୍ତେ ବିଶ୍ୱାସ କରନ୍ତି । କିନ୍ତୁ ପ୍ରାବନ୍ଧିକ କହିଛନ୍ତି ଯେ ସମଗ୍ର ଗୀତା ବିଶୁଦ୍ଧ ସଂସ୍କୃତରେ ଲିଖିତ ଓ ପାଣିନି ବ୍ୟାକରଣ ରଚନା ପରେ ବିଶୁଦ୍ଧ ସଂସ୍କୃତ ପ୍ରସାର ଜନ୍ମ । ଏଣୁ ଗୀତା ପାଣିନିଙ୍କ ପରବର୍ତ୍ତୀ କାଳର ରଚନା । ଗୀତା ମଧ୍ୟରେ କେତେକ ଉପନିଷଦର ଶ୍ଳୋକ ଏବଂ ଶ୍ଳୋକାର୍ଦ୍ଧ ଦେଖିବାକୁ ମିଳେ । ଏଣୁ ଏହା ଉପନିଷଦରେ ବର୍ଣ୍ଣିତ ତତ୍ତ୍ୱସମୂହର ସାରମର୍ମ । ଗୀତା ସମ୍ପର୍କରେ ମହାଭାରତରେ ଯେଉଁ ତଥ୍ୟ ଦିଆଯାଇଛି, ତାହା ଅବାସ୍ତବ ବୋଲି ଲେଖକ ଦର୍ଶାଇଛନ୍ତି । କାରଣ ସମଗ୍ର ଗୀତା ମଧ୍ୟରେ ୮, ୨୦ଟି ଶ୍ଳୋକକୁ ବାଦ୍ ଦେଲେ ଅନ୍ୟ ସମସ୍ତ ଶ୍ଳୋକରେ ନିବୃତ୍ତିର ମାର୍ଗ ବର୍ଣ୍ଣିତ । ଏଣୁ ସମଗ୍ର ଗୀତା ଶ୍ରବଣ କରିସାରିବା ପରେ ଅର୍ଜୁନ ନିବୃତ୍ତିମାର୍ଗ ଦ୍ୱାରା ପ୍ରେରିତ ନ ହୋଇ ପ୍ରବୃତ୍ତି ମାର୍ଗକୁ ଗ୍ରହଣ କରି ପିତାମହ, ଗୁରୁ, ଭ୍ରାତା ଇତ୍ୟାଦିଙ୍କୁ ବଧ କରିବାପାଇଁ ଯୁଦ୍ଧରେ ପ୍ରବର୍ତ୍ତିତ ହେବା ବାସ୍ତବତା ଦୃଷ୍ଟିରୁ ଗ୍ରହଣୀୟ ନୁହେଁ ବୋଲି ଲେଖକ ଦର୍ଶାଇଛନ୍ତି ।

ଗୀତାରେ ଭଗବାନ କୃଷ୍ଣ କହିଛନ୍ତି ନକ୍ଷତ୍ରମାନଙ୍କ ମଧ୍ୟରେ ଚନ୍ଦ୍ର ପ୍ରଧାନ, ବୃକ୍ଷମାନଙ୍କ ମଧ୍ୟରେ ଅଶ୍ୱତ୍ଥ ପ୍ରଧାନ ଓ ମତ୍ସ୍ୟମାନଙ୍କ ମଧ୍ୟରେ ମକର ଶ୍ରେଷ୍ଠ । ଲେଖକ କହିଛନ୍ତି ଯେ ସୃଷ୍ଟିକର୍ତ୍ତା ସ୍ୱୟଂ ବିଭୂତି ପ୍ରକାଶ କରିବାକୁ ଯାଇ ଏତାଦୃଶ ଭ୍ରମ ପ୍ରମାଦ ଘଟାଇବେ କିପରି । କାରଣ ଆଜିର ବୈଜ୍ଞାନିକ ଯୁଗରେ କେହି କେବେ ଏଗୁଡ଼ିକରେ ଶ୍ରେଷ୍ଠତ୍ୱ ଗ୍ରହଣ କରିବେ ନାହିଁ, ସେହିପରି ଗୀତା ବର୍ଣ୍ଣିତ ବିଶ୍ୱରୂପକୁ ଋଗ୍‌ବେଦର 'ସହସ୍ର ଶୀର୍ଷ ପୁରୁଷ' ରୂପାନ୍ତରିତ ବୋଲି ପ୍ରାବନ୍ଧିକ ଦର୍ଶାଇଛନ୍ତି ।

ଆଲୋଚ୍ୟ ପ୍ରବନ୍ଧରେ ପ୍ରାବନ୍ଧିକଙ୍କ ବାସ୍ତବବାଦୀ ଦୃଷ୍ଟିର ପରାକାଷ୍ଠା ପ୍ରଦର୍ଶିତ ହୋଇଅଛି ।

**ରାମାୟଣ**

ଦୁଇଟି ଭାଗରେ ବିଭକ୍ତ ଏହି ଆଲୋଚନା ୧୯୧୬ ସାଲ 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ ହୋଇଥିଲା । 'ମହାଭାରତ' ପ୍ରବନ୍ଧ ଭଳି ଏହି ପ୍ରବନ୍ଧର ପ୍ରଥମ ଭାଗରେ 'ରାମାୟଣ'ର ପ୍ରାଚୀନତା ତଥା ରଚୟିତା ବାଲ୍ମୀକିଙ୍କ ସମ୍ପର୍କରେ ଆଲୋଚନା କରିଥିବା ସ୍ଥଳେ ଦ୍ୱିତୀୟ ଭାଗରେ ରାମଙ୍କ ଅବତାରତ୍ୱ ବିଷୟରେ ଆଲୋକପାତ କରିଅଛନ୍ତି ।

ବର୍ତ୍ତମାନ ଆମେ ଯାହାକୁ ବାଲ୍ମୀକି ରାମାୟଣ ବୋଲି କହୁଛୁଁ, ତାହା ସାତ କାଣ୍ଡରେ ବିଭକ୍ତ ଓ ଏହାର ରଚୟିତା ବାଲ୍ମୀକି ଦସ୍ୟୁ ରତ୍ନାକରଙ୍କ ରୂପାନ୍ତର ବୋଲି ଗ୍ରହଣ କରାଯାଇଥାଏ । ଦସ୍ୟୁ ରତ୍ନାକରଙ୍କର ବାଲ୍ମୀକିତ୍ୱ ପ୍ରାପ୍ତି ସମ୍ପର୍କରେ

ପ୍ରାବନ୍ଧିକ କହୁଛନ୍ତି ଯେ ଏହା ସତ୍ୟ ନୁହେଁ, ବାଲ୍ମୀକି ଅର୍ଥ ଉଇହୁଙ୍କା ହୋଇଥିବାରୁ ପରବର୍ତ୍ତୀ କୌଣସି ଲେଖକ ଏହି ନାମର ଅର୍ଥସିଦ୍ଧି ପାଇଁ ଏହିଭଳି ଅଦ୍ଭୁତ କଳ୍ପନା କରିଥିଲେ । କାରଣ ଏହା ଏକ କିମ୍ବଦନ୍ତୀ ଓ ଏହାର ଶାସ୍ତ୍ରୀୟ ଆଧାର କିଛି ନାହିଁ ।

ରାମାୟଣର ରଚୟିତା ବାଲ୍ମୀକି, ଏହା କେହି ଅସ୍ୱୀକାର କରିବେ ନାହିଁ । କିନ୍ତୁ ଉତ୍ତରକାଣ୍ଡରେ ବର୍ଣ୍ଣିତ ଯେଉଁ ବାଲ୍ମୀକି ନିର୍ବାସିତା ସୀତାଙ୍କୁ ଆଶ୍ରମରେ ଆଶ୍ରୟ ଦେଇଥିଲେ ଏବଂ ଯେ କି ରାମଙ୍କର ସମସାମୟିକ । ସେ ବିଷୟ ନେଇ ପ୍ରାବନ୍ଧିକ ଗମ୍ଭୀର ସନ୍ଦେହ ପ୍ରକାଶ କରିଛନ୍ତି । କାରଣ ଉତ୍ତରକାଣ୍ଡରେ ଯାହାକିଛି ବର୍ଣ୍ଣନା ରହିଛି, ସେଥିରୁ ରାମାୟଣର ବହୁ କଥାବସ୍ତୁ ପରସ୍ପର ବିରୋଧୀ ଥିବା ଭଳି ଜଣାଯାଏ । ଯେପରିକି ଯଦି ରାମଚନ୍ଦ୍ରଙ୍କ ସମସାମୟିକ ବାଲ୍ମୀକି ଋଷି ରାମାୟଣ ରଚନା କରିଛନ୍ତି । ତେବେ ସେହି ବାଲ୍ମୀକି ଋଷି ରାମାୟଣ ପ୍ରଥମ ସର୍ଗରେ ନାରଦଙ୍କୁ କାହିଁକି ପଚାରିଲେ, ଆର୍ଯ୍ୟ ପୁରୁଷମାନଙ୍କ ମଧ୍ୟରେ ସର୍ବଗୁଣସମ୍ପନ୍ନ କେଉଁ ବ୍ୟକ୍ତିଙ୍କ ଚରିତ କାବ୍ୟାକାରେ ଲେଖାଯାଇ ପାରେ ? ନାରଦ ତା'ର ଉତ୍ତରରେ କହିଛନ୍ତି "ତୁମ୍ଭେ ଯେଉଁ ଗୁଣମାନ କୀର୍ତ୍ତନ କଲ, ତାହା ଜଣେ ଲୋକଠାରେ ଥିବା ଦୁର୍ଲ୍ଲଭ । ତଥାପି ହେ ମୁନି, ଏତାଦୃଶ ଗୁଣଯୁକ୍ତ ନରର ନାମ ସ୍ମରଣ କରି କହୁଅଛୁ ।" ଏହାପରେ ନାରଦଙ୍କ ବର୍ଣ୍ଣନାନୁସାରେ ବାଲ୍ମୀକି ରାମାୟଣ ରଚନା କଲେ । ଏଥିରୁ ସ୍ପଷ୍ଟ ଜଣାଯାଉଛି କି ବାଲ୍ମୀକି ରାମଙ୍କର ସମସାମୟିକ କେବେ ନଥିଲେ ବୋଲି ପ୍ରାବନ୍ଧିକ ଯୁକ୍ତି କରିଛନ୍ତି । ସେ ପୁନଶ୍ଚ ଦେଖାଇଛନ୍ତି ଯେ ବାଲ୍ମୀକିଙ୍କ ପ୍ରସଙ୍ଗ ରାମାୟଣର ଉତ୍ତରକାଣ୍ଡରେ ବିଶେଷ ଭାବେ ସ୍ଥାନ ପାଇଛି । କେତେକ ନିର୍ଦ୍ଦିଷ୍ଟ ପ୍ରମାଣ ସହିତ ସେ ଦର୍ଶାଇଛନ୍ତି ଯେ 'ଉତ୍ତରକାଣ୍ଡ' ପରବର୍ତ୍ତୀ ରଚନା, ଏହାଙ୍କ ମତରେ ବର୍ତ୍ତମାନ ଆମେ ବାଲ୍ମୀକି ରାମାୟଣ ବୋଲି ଯେଉଁ ବିରାଟଗ୍ରନ୍ଥକୁ ପାଉଛୁଁ ତାହା ବହୁକାଳଧରି ବହୁଲୋକଙ୍କ ଦ୍ୱାରା ପରିବର୍ଦ୍ଧିତ ରଚନା । କାରଣ 'ବାଲି' ଦ୍ୱୀପରେ ଯେଉଁ ରାମାୟଣ ପ୍ରଚଳିତ ସେଥିରେ ମାତ୍ର ୨୫ଟି ସର୍ଗ ରହିଛି ଏବଂ 'ଉତ୍ତରକାଣ୍ଡ' ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ପୁସ୍ତକ' ହିନ୍ଦୁମାନେ ପଞ୍ଚମ ଶତାବ୍ଦୀରେ ଯାଇ ବାଲିଦ୍ୱୀପରେ ଉପନିବେଶ ସ୍ଥାପନ କରିଥିଲେ ଏବଂ ବର୍ତ୍ତମାନର ବିରାଟ ରାମାୟଣ ନିଶ୍ଚୟ ୫ମ ଶତାବ୍ଦୀର ପରବର୍ତ୍ତୀ ରଚନା । ଏଥିପାଇଁ ଲେଖକ ଅନ୍ୟ କେତେକ ଯୁକ୍ତି ଉପସ୍ଥାପନ କରିଅଛନ୍ତି । ସେଥି-ମଧ୍ୟରୁ ଗୋଟିଏ ହେଉଛି ରାମାୟଣରେ ଛ' କାଣ୍ଡର ଶେଷରେ ଗ୍ରନ୍ଥ ଅଧ୍ୟୟନ ଓ ଶ୍ରବଣରେ ଫଳ ପ୍ରକାଶ କରାଯାଇଛି । ପୁନଶ୍ଚ ଉତ୍ତରକାଣ୍ଡର ଶେଷରେ ମଧ୍ୟ ଏହି ଅଧ୍ୟୟନ ଓ ଶ୍ରବଣର ଫଳ ଉଲ୍ଲେଖ କରାଯାଇଛି । ଯଦି ଅନ୍ୟାନ୍ୟ କାଣ୍ଡର ଶେଷରେ ଏହି କ୍ରମ ଅନୁସୃତ ହୋଇଥାନ୍ତା, ତେବେ ଏହା ବାଲ୍ମୀକିଙ୍କ ଲେଖାର କ୍ରମ ବୋଲି ଗ୍ରହଣ କରାଯାଇ ପାରନ୍ତା । ତା' ନହୋଇ କେବଳ ଷଷ୍ଠକାଣ୍ଡ ଶେଷରେ ଓ ଉତ୍ତରକାଣ୍ଡ

ଶେଷରେ ଏହି ରାମାୟଣ ପଠନ ଓ ଶ୍ରବଣର ଫଳ ବର୍ଣ୍ଣନା କରାଯାଇଥିବାରୁ ପ୍ରାବନ୍ଧିକ ଉତ୍ତରକାଣ୍ଡକୁ ପରବର୍ତ୍ତୀ ଓ ଅନ୍ୟ କୌଣସି କବିଙ୍କ ରଚନା ବୋଲି କହିଛନ୍ତି ।

ରାମାୟଣର ପ୍ରାଚୀନତା ସମ୍ବନ୍ଧରେ ପ୍ରାବନ୍ଧିକ ଏହି ପ୍ରବନ୍ଧରେ କେତେକ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରିଛନ୍ତି । ସେଥିମଧ୍ୟରୁ ରାମାୟଣ ଓ ମହାଭାରତ ମଧ୍ୟରେ ଥିବା ମତଭିନ୍ନତା । ଯଦି 'ମହାଭାରତ' ପୂର୍ବରୁ ରାମାୟଣ ରଚିତ ଓ ପ୍ରଚଳିତ ହୋଇଥାନ୍ତା, ତେବେ ପୁନେ ଧର୍ମରାଜ ଯୁଧିଷ୍ଠିର କିପରି ମାର୍କଣ୍ଡେୟଙ୍କଠାରୁ ରାମନାମ ଶୁଣି ସେ ବିଷୟର ବିସ୍ତୃତ ବିବରଣୀ ପାଇଁ କହିଛନ୍ତି । ଦ୍ୱିତୀୟତଃ ରାମାୟଣରେ ବୌଦ୍ଧଧର୍ମର ନିନ୍ଦା କିପରି ରାମଙ୍କ ମୁଖରେ ସମ୍ଭବ ହେଲା ? ବାଲ୍ମୀକି ରାମାୟଣରେ 'ମନୁସଂହିତା'ର ଶ୍ଳୋକର ଓ ମନୁଙ୍କ ନାମର ଉଲ୍ଲେଖ ମଧ୍ୟ ରହିଛି । ରାମାୟଣକୁ ଆଦିକାବ୍ୟ ବୋଲି କୁହାଯାଇଥାଏ । ଏହା ଅନୁଷ୍ଟୁପ୍ ଛନ୍ଦରେ ଲିଖିତ । କ୍ରୌଞ୍ଚ ମିଥୁନ ସମ୍ପର୍କୀୟ ଶ୍ଳୋକକୁ ଆଦିଶ୍ଳୋକ ମଧ୍ୟ କୁହାଯାଇଥାଏ । କିନ୍ତୁ 'ମନୁସଂହିତା' ମଧ୍ୟ ଏହି ଅନୁଷ୍ଟୁପ୍ ଛନ୍ଦରେ ଲିଖିତ । ଏହି ସବୁ ପ୍ରମାଣ ଉପସ୍ଥାପିତ କରି ଶେଷରେ ଲେଖକ କହିଛନ୍ତି—"ହିନ୍ଦୁ-ବୌଦ୍ଧବିଦ୍ୱେଷ ଭିତ୍ତିରୁ ଏହି ପୁସ୍ତକ ରଚିତ ହୋଇଛି । ସିଂହଳରେ ବୌଦ୍ଧଧର୍ମ ସ୍ଥାପିତ ହେଲା ପରେ ଏବଂ ଅନୁରାଧାପୁର ସ୍ଥାପିତ ହେଲାପରେ ଏହି ରାମାୟଣର ଅଧିକାଂଶ ରଚିତ ହୋଇଅଛି । ପୂର୍ବ ଛ'କାଣ୍ଡ ଯେଉଁ କବି ଲେଖିଛନ୍ତି, ସେ ଉତ୍ତରକାଣ୍ଡ ଲେଖି ନାହାଁନ୍ତି ବା ବାଲ୍ମୀକି କାଣ୍ଡ ଭାଗକର ଲେଖି ନାହାନ୍ତି ।"

ପ୍ରବନ୍ଧର ଦ୍ୱିତୀୟ ଭାଗରେ ପ୍ରାବନ୍ଧିକ ରାମଙ୍କ ଅବତାରତ୍ୱ ବିଷୟରେ ପ୍ରଶ୍ନ ଉଠାଇଛନ୍ତି । ସେ ଭାରତୀୟ ଜନମାନସକୁ ବାସ୍ତବବାଦୀ ଦୃଷ୍ଟିକୋଣରୁ ପର୍ଯ୍ୟାଲୋଚନା କରି କହିଛନ୍ତି— "ମହାପୁରୁଷମାନଙ୍କର ଅସାଧାରଣ ଗୁଣନିଚୟ ଦେଖି ସେଗୁଡ଼ିକ ଦୈବୀଶକ୍ତିଦ୍ୱାରା ପ୍ରାପ୍ତ ହୋଇଥିବାର ଯେଉଁମାନେ ପ୍ରକାଶ କରନ୍ତି, ସେମାନେ ମାନବ ପ୍ରତିଭାର ମୂଳରେ କୁଠାରାଘାତ କରନ୍ତି । ସେମାନେ ମାନବର ମହତ୍ତ୍ୱ ବୃଦ୍ଧିରେ କ୍ଷୁର୍ଣ୍ଣମନା, ସେମାନେ ଜାତୀୟ ଅବନତିର ପକ୍ଷପାତି । ଭାରତବାସୀ ଦେବତାକୁ ମନୁଷ୍ୟ କରି ପାରନ୍ତି, ମାତ୍ର ମନୁଷ୍ୟକୁ ଦେବତା ଗଣି ଆରାଧନା କରି ପାରନ୍ତି ନାହିଁ । ରାମଙ୍କୁ ବିଷ୍ଣୁ ବୋଲି, ବାଲ୍ମୀକି ରାମନାମ ପ୍ରସାଦରୁ କବିହେଲେ ବୋଲି, ମୂର୍ଖ କାଳିଦାସ ଆତ୍ମହତ୍ୟା କଲାବେଳେ ସରସ୍ୱତୀ ତାହାଙ୍କୁ ବରଦେଇ ପଣ୍ଡିତ କଲେ ବୋଲି ମିଥ୍ୟା ରଚନା କରିବାଦ୍ୱାରା ଆର୍ଯ୍ୟ ମହତ୍ତ୍ୱ ଧ୍ୱଂସର ଚେଷ୍ଟା କରାଯାଇଅଛି ।" ଭାରତୀୟ ବୌଦ୍ଧିକତାର ଚରମ ଅବନତି ବାସ୍ତବରେ ଏହି ପୌରାଣିକ ଦୈବୀ ବିଶ୍ୱାସ ଫଳରେ ସୃଷ୍ଟି ହୋଇଥିଲା । କାରଣ ପୁରାଣକାରଗଣ କଥାର ମାୟାରେ ମାନବିକ ପ୍ରତିଭା ଓ ପରାକାଷ୍ଠାକୁ ଗୌଣକରି ଦୈବୀ ଶକ୍ତିର ପ୍ରାଧାନ୍ୟ ପ୍ରତିଷ୍ଠା କରିବା ପାଇଁ ନାନା ବିଶ୍ୱାସଯୋଗ୍ୟ କାହାଣୀମାନ ସୃଷ୍ଟି କରିଥିଲେ ।

ତେଣୁ 'ରାମାୟଣ'ରୁ ବିଭିନ୍ନ ଉଦ୍ଧୃତ ଦେଇ ପ୍ରାବନ୍ଧିକ ଏଥିରେ ଦର୍ଶାଇଛନ୍ତି ଯେ ଯେଉଁସବୁ ସ୍ଥାନରେ ରାମଙ୍କ ଅବତାରତ୍ୱର ବର୍ଣ୍ଣନା ରହିଛି । ସେ ସବୁ ଅତି ସୀମିତ ଓ ପରବର୍ତ୍ତୀ କାଳରେ ପକ୍ଷିପ୍ତ ଅଂଶ । ରାମାୟଣ ରଚନାର ଭିତ୍ତିକୁ ଉଦ୍ଧାର କରି ପ୍ରାବନ୍ଧିକ କହିଛନ୍ତି ଯେ ଯେତେବେଳେ ବାଲ୍ମୀକିଙ୍କ ପ୍ରଶ୍ନ ଫଳରେ ନାରଦ ଉତ୍ତର ଦେଇଛନ୍ତି, ସେତେବେଳେ ସେ କେବଳ ରାମଙ୍କୁ ଏକ ଆଦର୍ଶ ପୁରୁଷ ଭାବରେ ଉଲ୍ଲେଖ କରିଥିଲେ । ସେ କେବେ ରାମଙ୍କୁ କୃଷ୍ଣଙ୍କ ଅବତାର ବୋଲି କହି ନଥିଲେ । ବରଂ ଯେଉଁସବୁ ବିଶେଷଣ ସେ ରାମଙ୍କ ପ୍ରତି ପ୍ରୟୋଗ କରିଥିଲେ ତାହା ରାମଙ୍କର ନରତ୍ୱର ପ୍ରମାଣ କରୁଛି । ଯଥା— ପ୍ରଜାପତିସମଃ, ବିଷ୍ଣୁନା ସଦୃଶୋବୀର୍ଯେ 'ଇତ୍ୟାଦି' ରାମାୟଣରେ ଏହି ବ୍ୟାପକ ପକ୍ଷିପ୍ତତାକୁ ଦର୍ଶାଇବାକୁ ଯାଇ ପ୍ରାବନ୍ଧିକ କେତୋଟି ବର୍ଣ୍ଣନାର ଉଲ୍ଲେଖ କରିଅଛନ୍ତି । ଯେପରି ଇକ୍ଷ୍ୱାକୁବଂଶୀୟ ରାଜା ଦଶରଥଙ୍କ ରାଜତ୍ୱରେ ସମସ୍ତ ସୁଖସମୃଦ୍ଧି ଥିବା ସତ୍ତ୍ୱେ ପୁନୋତ୍ପତ୍ତି ନହେବାଜନିତ ଦୁଃଖ, ଗୁରୁ, ବ୍ରାହ୍ମଣ, ବଶିଷ୍ଠ, ଜାବାଳୀ, ବାମଦେବ ଇତ୍ୟାଦି ଋଷିଙ୍କ ପ୍ରସ୍ତାବାନୁକ୍ରମେ ଅଶ୍ୱମେଧ ଯଜ୍ଞାନୁଷ୍ଠାନର ନିଷ୍ପତ୍ତି ଓ ଆୟୋଜନ ପାଇଁ ମନ୍ତ୍ରୀମାନଙ୍କୁ ଆଦେଶ ପରେ ପୁନଶ୍ଚ ଋଷ୍ୟଶୃଙ୍ଗଙ୍କ ଉପାଖ୍ୟାନର ଅବତାରଣା ସମ୍ପୂର୍ଣ୍ଣ ଅପ୍ରାସଙ୍ଗିକ । ଏଣୁ ପ୍ରାବନ୍ଧିକ କହିଛନ୍ତି—"ଅଷ୍ଟମ ସର୍ଗରେ ଅଶ୍ୱମେଧ ଯଜ୍ଞ କରିବାର ସ୍ଥିରୀକୃତ ହେଲା । ଆୟୋଜନ କରିବାକୁ ମନ୍ତ୍ରୀମାନେ ଆଦେଶ ପାଇଲେ । ପୁଣି ଦ୍ୱାଦଶସର୍ଗରେ ସେହି ପ୍ରସ୍ତାବର ପୁନରୁକ୍ତି ଓ ପୁନରୁତ୍ଥାପନ ହେବାର କାରଣ କ'ଣ ? ମଧ୍ୟବର୍ତ୍ତୀ ନବମ, ଦଶମ ଓ ଏକାଦଶ ସର୍ଗ ବୃତ୍ତାନ୍ତ ବର୍ଣ୍ଣିତ ହେଲାରୁ ଗୁଣ୍ଡାମେଳ କରିବାକୁ ଦ୍ୱାଦଶ ସର୍ଗର ପ୍ରୟୋଜନ ହୋଇଅଛି ।"

ଲେଖକ ଦର୍ଶାଇଛନ୍ତି ଯେ ବାଳକାଣ୍ଡର କେତୋଟି ସର୍ଗ ଏବଂ ଲଙ୍କାକାଣ୍ଡର ୧୧୯ ସର୍ଗଟି ଉଠାଇଦେଲେ ବିଷ୍ଣୁଙ୍କର ଅବତାରତ୍ୱ ରାମାୟଣର ଆଉ କେଉଁଠାରେ ନାହିଁ । ଏହାର ଆଲୋଚନା କରି ସେ ଦର୍ଶାଇଛନ୍ତି—"ରାବଣ ହତ ହେଲା ଉତ୍ତାରୁ ଏବଂ ସୀତାଦେବୀ ଅଗ୍ନିପ୍ରବେଶ କଲା ଉତ୍ତାରୁ ବ୍ରହ୍ମାପ୍ରମୁଖ ଦେବତାମାନେ ସେଠାରେ ଉପସ୍ଥିତ ହୋଇ ରାମଙ୍କୁ ବିଷ୍ଣୁ, ପରମବ୍ରହ୍ମ ବୋଲି ସ୍ତୁତିକରିବାକୁ ଲାଗିଲେ । ଏହି ସର୍ଗଟିର ପୂର୍ବାପର ସମ୍ବନ୍ଧ କିଛି ନାହିଁ । ପୂର୍ବାପର ସମ୍ବନ୍ଧ ନରଖି ଗୋଟିଏ ଶ୍ଳୋକ ପୁସ୍ତକ ମଧ୍ୟରେ ରଖିଦେବା ବଡ଼ କଠିନ ବ୍ୟାପାର ନୁହେଁ । ଏଣୁ କୌଣସି ଭକ୍ତକବି ଏହା କରିଅଛନ୍ତି । ରାବଣ ବଧ ଉତ୍ତାରେ ଦେବତାମାନେ ଏହି ସ୍ତୁତିବାଦ କରିଥିଲେ ରାମଙ୍କ ମୁଖରୁ ସୀତାଙ୍କ ପ୍ରତି ଦୁର୍ବାକ୍ୟ ଓ କଟୁଭାଷଣ ପ୍ରକାଶ ପାଇ ନଥାନ୍ତା ଏବଂ ସୀତାଦେବୀଙ୍କି ଅଗ୍ନି ପ୍ରବେଶ କରିବାକୁ ପଡ଼ିନଥାନ୍ତା । ସୀତାଙ୍କ ଅଗ୍ନିପ୍ରବେଶ ଉତ୍ତାରୁ ରାମଙ୍କୁ ଇଦୃଶ ସ୍ତୁତି କରିବାଦ୍ୱାରା ଦେବତାମାନଙ୍କର କେଉଁ ବୁଦ୍ଧିମତ୍ତାର ପରିଚୟ ମିଳିଲା ? ଏହିସ୍ତୁତି ମଧ୍ୟରେ ପୁଣି କୃଷ୍ଣ ଶବ୍ଦଟି ଦେଖାଯାଏ ।"

ଆଲୋଚ୍ୟ ପ୍ରବନ୍ଧରେ ସୀମିତ କେତୋଟି ପ୍ରମାଣ ଉପସ୍ଥାପିତ ହୋଇଥିଲେ

ମଧ୍ୟ ପ୍ରାବନ୍ଧିକଙ୍କ ନିର୍ଭୀକ ବାସ୍ତବବାଦୀ ଦୃଷ୍ଟିକୋଣ ତାହାଙ୍କ ଜ୍ଞାନଗର୍ଭିତ ବ୍ୟକ୍ତିତ୍ୱର ପରିଚୟ ପ୍ରଦାନ କରେ ।

## ବେଦ ଓ ହିନ୍ଦୁଧର୍ମ

ଏହା ଗୋଟିଏ ଦୀର୍ଘ ଆଲୋଚନା ଏଗାରଟି ଭାଗରେ ବିଭକ୍ତ ଏହି ଆଲୋଚନାରୁ ଜଳଧର ଦେବଙ୍କ ଗଭୀର ପାଣ୍ଡିତ୍ୟର ପରିଚୟ ମିଳେ । ବେଦ ଓ ଏହାର ବିଭିନ୍ନ ଭାଷ୍ୟକାରଙ୍କ ଭାଷ୍ୟସମୂହ ଅଧ୍ୟୟନ କରି ସେ ବହୁ ଗୁରୁତ୍ୱପୂର୍ଣ୍ଣ ତତ୍ତ୍ୱର ଅବତାରଣା ଏଥିରେ କରିଅଛନ୍ତି । ବେଦ ବିଷୟକ ପ୍ରାଚ୍ୟ ଓ ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମତାମତର ତର୍କମା କରି ବିଭିନ୍ନ ପୁରାଣୋଗର ଦୃଷ୍ଟାନ୍ତ ସହିତ ସେ କେତେକ ପ୍ରଚଳିତ ବିଶ୍ୱାସର ପ୍ରତିବାଦ କରିଅଛନ୍ତି । ଏହି ପ୍ରବନ୍ଧ ମଧ୍ୟରୁ ପ୍ରାବନ୍ଧିକଙ୍କ ଅସାଧାରଣ ପ୍ରତିଭାର ପରିଚୟ ମିଳିଥାଏ । ବିଭିନ୍ନ ସମୟରେ ହିନ୍ଦୁମାନଙ୍କର ଧର୍ମଗୁରୁମାନେ ବେଦ ସମ୍ବନ୍ଧରେ ଯେଉଁସବୁ ମତାମତର ପ୍ରଚଳନ କରିଯାଇଛନ୍ତି, ସେଥିମଧ୍ୟରୁ କେତେକ ମତର ଅସାରତା ପ୍ରତିପାଦନ ପାଇଁ ସେ ଗଭୀରଭାବେ ବିଭିନ୍ନ ଶାସ୍ତ୍ରପୁରାଣାଦି ଅଧ୍ୟୟନ କରିଥିବାର ପ୍ରମାଣ ମିଳେ । 'ଉତ୍କଳ ସାହିତ୍ୟ' ପତ୍ରିକାର ୧୯୩୬ ମସିହା ଶେଷଭାଗରୁ ୧୯୩୭ ମସିହା ଚୈତ୍ର ସଂଖ୍ୟା ପର୍ଯ୍ୟନ୍ତ ଧାରାବାହିକ ଭାବେ ଏହି ପ୍ରବନ୍ଧ ପ୍ରକାଶିତ ହୋଇଥିଲା ।

ବେଦ ଅପୌରୁଷେୟ, ବ୍ରହ୍ମନିଃଶ୍ୱସିତ ଓ ନିତ୍ୟ ବୋଲି ବିଜ୍ଞ ହିନ୍ଦୁମାନଙ୍କ ଦ୍ୱାରା ସମ୍ମାନିତ ହୋଇଥାଏ । ଧର୍ମଗୁରୁ ଓ ବିଜ୍ଞବ୍ୟକ୍ତିମାନଙ୍କ ପଦାଙ୍କ ଅନୁସରଣ କରି ସାଧାରଣ ଲୋକ ମଧ୍ୟ ଏହି ବିଶ୍ୱାସ ଦ୍ୱାରା ପରିଚାଳିତ । ସେମାନେ ବିଶ୍ୱାସ କରନ୍ତି ଯେ ବ୍ରହ୍ମାଙ୍କ ଚାରିମୁଖରୁ ଚାରିବେଦ ଉଚ୍ଚାରିତ ହୋଇଥିଲା ଏବଂ ବେଦବାକ୍ୟ ଅକାଟ୍ୟ । ପ୍ରାବନ୍ଧିକ ଏହି ପ୍ରବନ୍ଧର ପ୍ରଥମ ଓ ଦ୍ୱିତୀୟ ଭାଗରେ ବେଦର ଅପୌରୁଷେୟତା ଓ ନିତ୍ୟତାକୁ ଅପ୍ରାମାଣିକ ତଥା ଭିତ୍ତିହୀନ ବୋଲି ପ୍ରମାଣ କରିଛନ୍ତି । ପ୍ରାଚ୍ୟ ପଣ୍ଡିତମାନଙ୍କ ମତାମତକୁ ସମାଲୋଚନା କରି ବେଦର ମହତ୍ତ୍ୱକୁ ପାଶ୍ଚାତ୍ୟ ପଣ୍ଡିତମାନେ ଯେଉଁ ବାସ୍ତବ ଦୃଷ୍ଟିକୋଣରୁ ସ୍ୱୀକାର କରନ୍ତି ତାହାକୁ ପ୍ରଶଂସା କରି କହିଛନ୍ତି— ପାଶ୍ଚାତ୍ୟ ଦେଶବାସୀ ପଣ୍ଡିତଙ୍କ ଦ୍ୱାରା ବେଦ ସମ୍ମାନିତ ଓ ଆଦରଣୀୟ ଅପୌରୁଷେୟ ବା ବ୍ରହ୍ମନିଃଶ୍ୱସିତ ବୋଲି ନୁହେଁ. ଯେହେତୁ ସେମାନଙ୍କ ମତରେ ବେଦ ଗୋଟାଏ ପ୍ରାଚୀନ ଆର୍ଯ୍ୟଜାତିର ପୁରାତତ୍ତ୍ୱ ଓ ସଭ୍ୟତାର ଇତିହାସ ।"

ବେଦର ଅପୌରୁଷେୟତା ଓ ନିତ୍ୟତା ବିରୁଦ୍ଧରେ ପ୍ରଥମ ଯୁକ୍ତିରୂପେ ଲେଖକ ଦର୍ଶାଇଛନ୍ତି ଯେ 'ବେଦ' ଶବ୍ଦଟି ଋକ୍, ଯଜୁଃ, ସାମ ବେଦରେ ନାହିଁ । ଅଥଚ ସଂହିତା ତଥା ପରବର୍ତ୍ତୀ ବ୍ରାହ୍ମଣାଦି, ଉପନିଷଦ୍ ଓ ପୁରାଣମାନଙ୍କରେ ଏହି ଶବ୍ଦର ପ୍ରୟୋଗ ଦେଖାଯାଇଥାଏ ଏଣୁ 'ବେଦ' ଶବ୍ଦଟି ସମ୍ପୂର୍ଣ୍ଣ କାଳଜନିତ

ଓ ମନୁଷ୍ୟରଚିତ । ଏହା ବ୍ରହ୍ମାଙ୍କ ମୁଖନିଃସୃତ ନୁହେଁ କିମ୍ବା ନିଃଶ୍ୱସିତ ନୁହେଁ । ଏହା ଜାଣି ମଧ୍ୟ ଶଙ୍କରାଦି ଦାର୍ଶନିକଗଣ ଏହି ଶବ୍ଦ ନିତ୍ୟ ବୋଲି ଘୋଷଣା କରିଥିବା କ୍ଷୋଭର ବିଷୟ ବୋଲି ଲେଖକ ଦର୍ଶାଇଛନ୍ତି ।

ଯେଉଁମାନେ ବେଦର ଅପୌରୁଷେୟତା ପ୍ରଚାର କରନ୍ତି, ସେମାନଙ୍କ ମଧ୍ୟରୁ କେତେକ କୁହନ୍ତି ଯେ ମଣିଷ ସୃଷ୍ଟ କୌଣସି କାବ୍ୟ କେବେ ଅଭ୍ରାନ୍ତ ନୁହେଁ । କିନ୍ତୁ ବେଦ ବାକ୍ୟ ଅଭ୍ରାନ୍ତ ଥିବାରୁ ଏହା କୌଣସି ମନୁଷ୍ୟକୃତ ନୁହେଁ । ଅନ୍ୟ କେତେକ ମତ ଦିଅନ୍ତି ଯେ ବେଦର ମନ୍ତ୍ରଗୁଡ଼ିକରେ କୌଣସି ରଚୟିତାଙ୍କ ନାମ ନଥିବାରୁ ଏହା ମନୁଷ୍ୟସୃଷ୍ଟ ନୁହେଁ କିନ୍ତୁ ପ୍ରାବନ୍ଧିକ କୁହନ୍ତି ଯେ ଏଭଳି ଯୁକ୍ତିର ଭିତ୍ତି ନିତାନ୍ତ ଦୁର୍ବଳ । କାରଣ ସଂସ୍କୃତାଦି ବହୁଭାଷାରେ ବହୁରଚନା ରହିଛି, ଯେଉଁଥିରେ ରଚୟିତାଙ୍କର ନାମୋଲ୍ଲେଖ ନାହିଁ । ଏଣୁ ସେସବୁ ରଚନାକୁ କ'ଣ ଅପୌରୁଷେୟ କୁହାଯିବ ? ଦ୍ୱିତୀୟତଃ ବେଦର ବାକ୍ୟ ଯେ ଅଭ୍ରାନ୍ତ, ଏହା କେହି କେବେ ପ୍ରମାଣ କରିବାକୁ ମଧ୍ୟ ଚେଷ୍ଟା କରି ନାହାନ୍ତି । ଦୟାନନ୍ଦ ସରସ୍ୱତୀଙ୍କ ଭଳି ପଣ୍ଡିତଗଣ ମୂଳ ଶ୍ଳୋକର ଅର୍ଥକୁ ଜଟିଳ କରିବାକୁ ଚେଷ୍ଟାକରି ସାଧାରଣ ଲୋକଙ୍କୁ ବିଭ୍ରାନ୍ତ କରିବାର ପ୍ରୟାସ କରିଛନ୍ତି ବୋଲି ପ୍ରାବନ୍ଧିକ ମତ ଦେଇଛନ୍ତି । ଏ ସମ୍ପର୍କରେ ସେ ବୃହଦାରଣ୍ୟକ ଉପନିଷଦର "ଅରେ ଅସ୍ୟ ମହତୋ ଭୂତସ୍ୟ ନିଃଶ୍ୱସିତମେତତ୍ ଯତ୍ ଋଗ୍‌ବେଦୋ ଯଜୁର୍ବେଦଃ ସାମବେଦୋଽଥର୍ବାଙ୍ଗିରସ ଇତିହାସଃ ପୁରାଣଂ ବିଦ୍ୟା ଉପନିଷଦଃ ଶ୍ଳୋକାଃ ସୂତ୍ରାଣ୍ୟନୁ ବ୍ୟାଖ୍ୟାନାତି ବ୍ୟାଖ୍ୟାନାନ୍ୟ ସ୍ୟୈବୈତାନି ସର୍ବାଣି ନିଃଶ୍ୱସିତାନି" ଶ୍ଳୋକଟି ଉଦ୍ଧାର କରିଅଛନ୍ତି । ଏହାର ତାତ୍ପର୍ଯ୍ୟ ହେଉଛି—କେବଳ ବେଦ ନୁହେଁ ଇତିହାସ, ପୁରାଣ, ବିଦ୍ୟା, ଉପନିଷଦ ଶ୍ଳୋକ, ସୂତ୍ର ବ୍ୟାଖ୍ୟାନ ଇତ୍ୟାଦି ସମସ୍ତ ଅପ୍ରଯତ୍ନ ପୁରୁଷନିଃଶ୍ୱାସ ଭଳି ମହତ ଭୂତଠାରୁ ଅଭିବ୍ୟକ୍ତ ହୋଇଅଛି । ଏଣୁ କେବଳ ବେଦକୁ ଅପୌରୁଷେୟ କହିଲେ ଯଥାର୍ଥତା କିଛି ନାହିଁ ।

ବେଦର ସୃଷ୍ଟିକ୍ରମର ଆଲୋଚନା କରି ପ୍ରାବନ୍ଧିକ ଦର୍ଶାଇଛନ୍ତି "ଅଥର୍ବ ବେଦ ଭିନ୍ନ ଅନ୍ୟ ତିନିବେଦରେ ବେଦ ଶବ୍ଦ ଉଲ୍ଲେଖ ନାହିଁ କିମ୍ବା ଋଗ୍‌ବେଦ, ଯଜୁର୍ବେଦ ଓ ସାମବେଦର ମଧ୍ୟ ଉଲ୍ଲେଖ ନାହିଁ । ଅଥଚ ବ୍ରାହ୍ମଣ, ଉପନିଷଦ ମାନବ ଧର୍ମଶାସ୍ତ୍ର ଓ ପୁରାଣରେ ଏହି ତିନିବେଦର ନାମ ମିଳେ । ଏହା ଦେଖି ଅନାୟାସରେ ମତ ଦିଆଯାଇପାରେ ଯେ ଅତି ପ୍ରାଚୀନ କାଳରେ ଋଷିମାନେ ଯେଉଁ ମନ୍ତ୍ରସମୂହ ଉଚ୍ଚାରଣ ଓ ଅଭ୍ୟାସ କରୁଥିଲେ । ସେଥିମଧ୍ୟରୁ ଅଧିକାଂଶ ମନ୍ତ୍ରର ନାମ ଋକ୍, କେତେକର ନାମ ସାମ୍ ଓ କେତେକର ନାମ ଯଜୁଃ । ଏହି ତିନିଶବ୍ଦର ପ୍ରଥମ ଉଲ୍ଲେଖ ଏକଥ ଋଗ୍‌ବେଦର ଦଶମ ବା ଶେଷ ମଣ୍ଡଳରେ ଦେଖାଯାଏ ।" ଏହି ଦୃଷ୍ଟିରୁ ପ୍ରାବନ୍ଧିକ କହିଛନ୍ତି, ଋଗ୍‌ବେଦର ଦଶମ ମଣ୍ଡଳ ପରେ ଅଥର୍ବ ବେଦର ସୃଷ୍ଟି ହୋଇଅଛି ।

ଋଗ୍‌ବେଦର ଦଶମ ମଣ୍ଡଳରେ ଯେଉଁ ଋଗ୍, ଯଜୁଃ, ସାମ୍ ଶବ୍ଦର ପ୍ରୟୋଗ କରାଯାଇଛି, ତାହା ବେଦ ଅର୍ଥରେ ନୁହେଁ ବୋଲି ଲେଖକ କହିଛନ୍ତି । ଏହାଙ୍କ ମତରେ ଏହି ଶବ୍ଦର ପ୍ରକୃତ ଅର୍ଥ ହେଉଛି ପଦ୍ୟ, ଗୀତ ଓ ଗଦ୍ୟ । ଏଥିରେ ବୁଝାଯାଇଛି ଯେ ପୁରୁଷର ମାନସ ଯଜ୍ଞରୁ ପଦ୍ୟ, ଗୀତ ଓ ଗଦ୍ୟରୂପ ଛନ୍ଦ ପ୍ରଣାଳୀର ରଚନା ଉତ୍ପନ୍ନ ହେଲ ଏବଂ ଗାୟତ୍ର୍ୟାଦି ଛନ୍ଦମାନେ ମଧ୍ୟ ଉତ୍ପନ୍ନ ହେଲେ । ପରବର୍ତ୍ତୀ ପର୍ଯ୍ୟାୟରେ ମଧ୍ୟ ଏହାର ବହୁ ପ୍ରମାଣ ପରିଲକ୍ଷିତ ହୁଏ । ଏ ସମ୍ପର୍କରେ ଲେଖକ ମନୁର ସୂଚୀଲେଖକଙ୍କ ଗୋଟିଏ ଶ୍ଳୋକର ଉଦ୍ଧାର କରି ତାହାର ବ୍ୟାଖ୍ୟାକରି କହିଛନ୍ତି ଯେ ଯଜ୍ଞସିଦ୍ଧି ନିମନ୍ତେ ଋକ୍, ଯଜୁ ଓ ସାମ ବା ପଦ୍ୟ, ଗୀତ ଓ ଗଦ୍ୟ ସୃଷ୍ଟି କଲେ ।

ବିଭିନ୍ନ ବେଦ ମଧ୍ୟରେ ପୁନରାବୃତ୍ତିର ଉଦାହରଣ ଦେଇ ଲେଖକ ଦେଖାଇଛନ୍ତି ଯେ ପ୍ରଥମେ ଋଗ୍‌ବେଦ ରଚିତ ହୋଇଥିଲା, ଏବଂ ଏହାହିଁ ପ୍ରଧାନ । ପରବର୍ତ୍ତୀକାଳରେ ଏହି ଋଗ୍‌ବେଦର ବହୁ ସୂକ୍ତ ସାମ, ଯଜୁଃ ଓ ଅଥର୍ବ ବେଦରେ ସ୍ଥାନ ପାଇଛି । ଋଗ୍‌ବେଦର ୧୦୨୮ ସୂକ୍ତ ମଧ୍ୟରୁ ପ୍ରାୟ ଅଧିକାଂଶ ସୂକ୍ତ ସାମବେଦରେ ରହିଛି । ଲେଖକ ନିର୍ଦ୍ଦିଷ୍ଟଭାବରେ ସଂଖ୍ୟା ଉଲ୍ଲେଖ କରି ମନୀଷୀର ଉଇଲ୍‌ସନଙ୍କ ମତକୁ ଉଦ୍ଧାର କରି ଦେଖାଇ ଅଛନ୍ତି ଯେ ସାମବେଦର ମୋଟ ୮୦୧୪ଟି ମନ୍ତ୍ର ମଧ୍ୟରୁ କେବଳ ୭୦ ଗୋଟି ଗୀତକୁ ଛାଡ଼ିଦେଲେ ସମସ୍ତ ମନ୍ତ୍ର ଋଗ୍‌ବେଦରୁ ଗ୍ରହଣ କରାଯାଇଅଛି । ସେହିଭଳି ପ୍ରବନ୍ଧର ୩ୟ ଅଧ୍ୟାୟରେ ପ୍ରାବନ୍ଧିକ ସପ୍ରମାଣ ଦର୍ଶାଇଛନ୍ତି ଯେ ଯଜୁଃ ଓ ଅଥର୍ବ ବେଦରେ ମଧ୍ୟ ଅଧିକାଂଶ ଋଗ୍‌ବେଦରୁ ଗୃହୀତ । ଲେଖକଙ୍କ ଭାଷାରେ—"ଋଗ୍‌ବେଦର ୧୦ମ ମଣ୍ଡଳର ପୁରୁଷସୂକ୍ତରେ ୧୬ ଗୋଟି ମନ୍ତ୍ର ଅଛି । ଅଥର୍ବ ବେଦର ୧୯ କାଣ୍ଡର ପୁରୁଷସୂକ୍ତରେ ୧୬ ଗୋଟି ମନ୍ତ୍ର ଅଛି । ମାତ୍ର ଉଭୟ ମନ୍ତ୍ରର ଶୃଙ୍ଖଳା ସମାନ ନୁହେଁ । ତା'ଛଡ଼ା ପଦ ପ୍ରୟୋଗରେ ମଧ୍ୟ ପାର୍ଥକ୍ୟ ଦେଖାଯାଏ ।"

ତୃତୀୟ ଅଧ୍ୟାୟରେ ବେଦର ଅପୌରୁଷେୟତା ସମ୍ବନ୍ଧରେ କେତେକ ପୌରାଣିକ ମତର ପର୍ଯ୍ୟାଲୋଚନା କରାଯାଇ ଏହିସବୁ ମତକୁ ଖଣ୍ଡନ କରାଯାଇଅଛି । ବ୍ରାହ୍ମଣ, ଆରଣ୍ୟକ, ଉପନିଷଦ୍ ଓ ପୁରାଣାଦି ଗ୍ରନ୍ଥରେ ବେଦର ଉତ୍ପତ୍ତି ସମ୍ବନ୍ଧରେ କେତେକ ପରସ୍ପର ବିରୋଧୀ ମତ ପ୍ରଚଳିତ ଥିବା ଲେଖକ ଦର୍ଶାଇଛନ୍ତି, ଯେପରି ବ୍ୟାସଙ୍କୁ ବେଦର ବିଭାଗକର୍ତ୍ତା ବୁଝାଯାଇଥାଏ । କିନ୍ତୁ ପ୍ରାବନ୍ଧିକ କହିଛନ୍ତି, ଯଦି ବେଦ ବ୍ରହ୍ମାଙ୍କ ସୃଷ୍ଟି, ତେବେ ବିଭାଗୀକରଣର ଆବଶ୍ୟକତା ଆସିଲା କାହିଁକି ? ଯଦି ଜଣେ ବ୍ୟକ୍ତିଙ୍କଦ୍ୱାରା ବେଦର ବିଭାଗୀକରଣ କରାଯାଇଥାନ୍ତା ତେବେ ବିଭିନ୍ନ ବେଦରେ ଏହି ବ୍ୟାପକ ପୁନରାବୃତ୍ତି କେବେ ସମ୍ଭବ ହୋଇନଥାନ୍ତା, ତେଣୁ ଏସବୁ ମତକୁ ସମ୍ପୂର୍ଣ୍ଣ କପୋଳକଳ୍ପିତ ଓ ଉଦ୍ଭଟ ବୋଲି କହି ଲେଖକ କହିଛନ୍ତି —"ପୁରାଣ ଗୋଟିଏ

ବ୍ରହ୍ମା ସୃଷ୍ଟି କରି ତାଙ୍କ ଚାରିମୁଖରୁ ଚାରି ବେଦର ଉତ୍ପତ୍ତି କରାଇଲେ । ବିଷ୍ଣୁ ପୁରାଣ ମତରେ ବ୍ରହ୍ମାଙ୍କ ପୂର୍ବ ମୁଖରୁ ଋଗ୍‌ବେଦ, ପଶ୍ଚିମ ମୁଖରୁ ସାମବେଦ, ଉତ୍ତର ମୁଖରୁ ଅଥର୍ବବେଦ ଏବଂ ଦକ୍ଷିଣ ମୁଖରୁ ଯଜୁର୍ବେଦ । ହରିବଂଶ ମତରେ ଗାୟତ୍ରୀଠାରୁ ବେଦର ଜନ୍ମ । ମହାଭାରତରେ ଏ ସମ୍ବନ୍ଧରେ ଗୋଟିଏ ମତ ଅଛି, ବୋଲାଯାଇ ନପାରେ ।"

ପ୍ରବନ୍ଧର ଚତୁର୍ଥ ଭାଗରୁ ବେଦର ପ୍ରକୃତ ଆଲୋଚନା ଆରମ୍ଭ ହୋଇଛି । ବେଦାର୍ଥକୁ ପରବର୍ତ୍ତୀକାଳରେ ପୁରାଣକାରଗଣ କିପରି ବିକୃତ କରିଛନ୍ତି, ତାହା ପ୍ରମାଣ କରିବା ନିମନ୍ତେ ପ୍ରୟାସ କରାଯାଇଛି । ଲେଖକଙ୍କ ମତରେ ବେଦର ରଚନାକାଳ ସମ୍ବନ୍ଧରେ ନିର୍ଦ୍ଦିଷ୍ଟଭାବେ ପ୍ରକାଶ କରିବା ସମ୍ଭବ ନୁହେଁ । କାରଣ ଏହା ନିର୍ଦ୍ଦିଷ୍ଟ ଋଷିବିଶେଷଙ୍କର ରଚନା ନୁହେଁ, କିମ୍ବା ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ମଧ୍ୟ ଏହାର ରଚନା ସମ୍ପୂର୍ଣ୍ଣ ହୋଇ ନଥିଲା । ଫଳରେ ବହୁକାଳପର୍ଯ୍ୟନ୍ତ ବହୁ ଋଷିଙ୍କଦ୍ୱାରା ବେଦ ରଚିତ ହୋଇଥିଲା ।

ବୈଦିକ ଭାଷାକୁ କେହି କେହି ସଂସ୍କୃତ ଭାଷା ବୋଲି ପରିଚିତ କରାଇଥାନ୍ତି । କିନ୍ତୁ ଲେଖକଙ୍କ ମତରେ ବେଦର ଭାଷା ସ୍ୱତନ୍ତ୍ର । କାରଣ ବୈଦିକ ଭାଷାରେ ଏପରି କେତେକ ଶବ୍ଦ ରହିଛି, ଯାହା ସଂସ୍କୃତରେ ନାହିଁ ଏବଂ ସଂସ୍କୃତରେ ମଧ୍ୟ କେତେକ ଶବ୍ଦ ରହିଛି ଯାହାକି ବେଦରେ ନାହିଁ; କିନ୍ତୁ ଇଚ୍ଛାକୃତଭାବେ ଜନସାଧାରଣଙ୍କୁ ବିଭ୍ରାନ୍ତ କରିବା ପାଇଁ କେତେକ ପ୍ରାଚ୍ୟ ପଣ୍ଡିତ ଏହିପରି ଏକ ଭ୍ରାନ୍ତ ଧାରଣା ପ୍ରଚଳନ କରାଇଥିଲେ । ପ୍ରାବନ୍ଧିକ ଏଠାରେ ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ମତ ଉଦ୍ଧାର କରି ଏହାର ଅସାରତା ପ୍ରତିପାଦନ କରିବାକୁ ଚେଷ୍ଟା କରିଅଛନ୍ତି । ସ୍ୱାମିଜୀ କହିଥିଲେ—"ସଂସ୍କୃତ ହି ମେ ପ୍ରକାଶ କିୟା ଯୋ କିସି ଦେଶ୍‌କି ଭାଷା ନହିଁ ।"

ବେଦର ନିତ୍ୟତା ତଥା ବେଦ ଈଶ୍ୱରସୃଷ୍ଟ ବୋଲି ବିଶ୍ୱାସ କରି ଭାରତବାସୀ ନିଜକୁ ବେଦାନୁଗୃହୀତ ଜାତି ଭାବରେ ପରିଚିତ କରାଇଥାନ୍ତି । କିନ୍ତୁ ଏହାଦ୍ୱାରା ସେମାନଙ୍କର ଯେ କି ବିପୁଳ ପରିମାଣରେ କ୍ଷତି ସାଧନ ହୋଇଛି, ତାହା ସେମାନେ ଅନୁଭବ କରିନଥାନ୍ତି । ଏଥିପାଇଁ ଦୁଃଖର ସହିତ ପ୍ରାବନ୍ଧିକ ଉଲ୍ଲେଖ କରିଛନ୍ତି—"ଈଶ୍ୱର ଓ ଦେବତା ଯାହାର ସହାୟ—ଯେଉଁ ଜାତିର ବିପତ୍ତି ଉପସ୍ଥିତ ହେଲେ କେବଳ କାତରୋକ୍ତି ଉଚ୍ଚାରଣଦ୍ୱାରା ଅପରର କୃପା ଆଶାରେ ଅନାଇ ରହିବ, ସେ ଜାତିର ପୌରୁଷ ଓ ଆତ୍ମମର୍ଯ୍ୟାଦା କାହିଁ ? ଭାରତବାସୀ ଅନ୍ଧବିଶ୍ୱାସରେ ଚିରକାଳ ପରିପଦାନତ ହୋଇ ଆସୁଅଛି । ତଥାପି ସେ ଅନ୍ଧବିଶ୍ୱାସ ତ୍ୟାଗ କରିବାକୁ ରାଜି ନୁହେ । ଏଥିରୁ ବଳି ପରିତାପର ବିଷୟ ଆଉ କ'ଣ ଅଛି ?"

ବେଦ ରଚନା ପରେ ଯେଉଁମାନେ ଏହାର ବ୍ୟାଖ୍ୟା କରୁଥିଲେ, ସେମାନଙ୍କୁ ନୈରୁକ୍ତ କୁହାଯାଉଥିଲା । ଏହିଭଳି ନୈରୁକ୍ତଙ୍କର ଆବିର୍ଭାବ ଘଟିଥିଲେ ମଧ୍ୟ ଯାସ୍କଙ୍କ

ଗ୍ରନ୍ଥ ବ୍ୟତୀତ ଅନ୍ୟ କୌଣସି ନୈରୁକ୍ତଙ୍କ ଗ୍ରନ୍ଥ ବର୍ତ୍ତମାନ ଉପଲବ୍‌ଧ ନୁହେଁ; କିନ୍ତୁ ଯାସ୍କ ତାହାଙ୍କ ରଚିତ ନିରୁକ୍ତ ଗ୍ରନ୍ଥରେ ଚର୍ମଶିରା, ଶାକପୂର୍ଣ୍ଣୀ, ଔପମନ୍ୟବ ପ୍ରଭୃତି ସତରଜଣ ନୈରୁକ୍ତଙ୍କ ନାମୋଲ୍ଲେଖ କରିଥିବା ପ୍ରାବନ୍ଧିକ ଦର୍ଶାଇଛନ୍ତି । ଏମାନେ ବେଦର ଶିକ୍ଷା, ବ୍ୟାକରଣ, ଇତିହାସ ପ୍ରଭୃତିର ଆଲୋଚନା କରିଥିବାର ପ୍ରମାଣ ମଧ୍ୟ ଯାସ୍କଙ୍କ ଗ୍ରନ୍ଥରୁ ଉପଲବ୍‌ଧ ହୋଇଥାଏ । ଏଣୁ ପରବର୍ତ୍ତୀ କାଳରେ ପାଣିନୀଙ୍କୁ ପ୍ରଥମ ବୈୟାକରଣ ଭାବରେ ଗ୍ରହଣ କରାଇବା ପାଇଁ ଯେଉଁ ପ୍ରୟାସ କରାଯାଇଛି, ପ୍ରାବନ୍ଧିକ ତାହାର ପ୍ରତିବାଦ ମଧ୍ୟ କରିଛନ୍ତି । ଯାସ୍କଙ୍କ ସମସାମୟିକ ବେଦର ବ୍ୟାଖ୍ୟା ଓ ଚତୁର୍ଦ୍ଦଶ ଶତାବ୍ଦୀରେ ସାୟନାଚାର୍ଯ୍ୟଙ୍କ ବେଦର ବ୍ୟାଖ୍ୟା ମଧ୍ୟରେ କିପରି ବ୍ୟାପକ ପ୍ରଭେଦ ରହିଛି, ପ୍ରାବନ୍ଧିକ ତାହା ଦର୍ଶାଇଛନ୍ତି ।

ପଞ୍ଚମ ଭାଗରେ ବେଦରେ ଉଲ୍ଲିଖିତ ତେତିଶ ସଂଖ୍ୟକ ଦେବତାଙ୍କ ମଧ୍ୟରୁ କିପରି ପୁରାଣର ତେତିଶ କୋଟି ଦେବତାଙ୍କ ପରିକଳ୍ପନା କରାଯାଇଛି, ତାହାର ପର୍ଯ୍ୟାଲୋଚନା କରାଯାଇଛି । 'ଦେବତା' ଶବ୍ଦର ପୌରାଣିକ ତଥା ତନ୍ତ୍ରପରବର୍ତ୍ତୀ କାଳର ଯେଉଁ ଅର୍ଥ ପ୍ରଚଳିତ ହୋଇଛି, ପ୍ରକୃତରେ ବେଦରେ ସେହି ଅର୍ଥରେ ଏହି ଶବ୍ଦର ପ୍ରୟୋଗ କରାଯାଇ ନଥିଲା । ବେଦରୁ କେତେକ ଉଦ୍ଧୃତି ଦେଇ ଲେଖକ କହିଛନ୍ତି ଯେ ବୈଦିକ ଋଷିମାନେ, ଯେଉଁ ପଦାର୍ଥର ସ୍ତୁତି କରୁଥିଲେ, ଯେଉଁ ସଜୀବ ବା ନିର୍ଜୀବ ପଦାର୍ଥ ସମ୍ବନ୍ଧରେ ବାକ୍ୟ ପ୍ରକାଶ କରୁଥିଲେ, ସେ ଦେବତା । ନୈରୁକ୍ତମାନଙ୍କ ମତରେ ତିନୋଟି ବେଦର ପ୍ରଧାନ ଦେବତା— ଅଗ୍ନି, ବାୟୁ ଓ ସୂର୍ଯ୍ୟ । ଅଗ୍ନି ଭୂସ୍ଥାନ ଦେବତା, ବାୟୁ ଅନ୍ତରୀକ୍ଷ ଦେବତା ଓ ସୂର୍ଯ୍ୟ ଦ୍ୟୁସ୍ଥାନ ଦେବତା । ଏହି ତିନି ଦେବତାଙ୍କ ଅବସ୍ଥିତି ଓ ଆକୃତିର ପରିବର୍ତ୍ତନରୁ କିପରି ଭିନ୍ନ ଭିନ୍ନ ଦେବତାଙ୍କ ନାମ ସୃଷ୍ଟି ହୋଇଛି, ତାହାର ବିସ୍ତୃତ ଆଲୋଚନା ବହୁ ପ୍ରମାଣସହ ପ୍ରାବନ୍ଧିକ ପ୍ରଦାନ କରିଅଛନ୍ତି ।

ପଞ୍ଚମ ଭାଗରେ ଶେଷ ପର୍ଯ୍ୟାୟରୁ ସପ୍ତମ ଭାଗ ଶେଷ ପର୍ଯ୍ୟନ୍ତ ଏହି ତିନି ଦେବତାଙ୍କୁ କିପରି ଭାବରେ ବିଭିନ୍ନ ନାମରେ ସ୍ତୁତି କରାଯାଇଛି, ତାହା ବିଭିନ୍ନ ପ୍ରମାଣ ସହ ଉଲ୍ଲେଖ କରାଯାଇଛି, ଏହିସବୁ ନାମକରଣ ମଧ୍ୟରେ ଅଧିକାଂଶ ରୂପକ ଧର୍ମୀ । କିନ୍ତୁ ପରବର୍ତ୍ତୀ କାଳରେ ଏହି ରୂପକଧର୍ମୀ ନାମକରଣକୁ ନିର୍ଦ୍ଦିଷ୍ଟ ଆକୃତି ବିଶିଷ୍ଟ କରାଯାଇ ଉପାସନା କରାଯାଇଥିବା ଦର୍ଶାଇଛନ୍ତି । ଲେଖକଙ୍କର ଏହି ବିଶ୍ଳେଷଣାତ୍ମକ ଆଲୋଚନା ଦ୍ୱାରା ଦେବତାମାନଙ୍କ ସମ୍ପର୍କରେ ଥିବା ବହୁ ପ୍ରଚଳିତ ଧାରଣା ସ୍ୱତଃ ପରିବର୍ତ୍ତିତ ହୋଇଥାଏ । ଏ ସମ୍ବନ୍ଧୀୟ ଗୋଟିଏ ମାତ୍ର ଉଦାହରଣ ଦେଲେ ପ୍ରାବନ୍ଧିକଙ୍କ ମତାମତର ଗମ୍ଭୀରତା ପ୍ରମାଣିତ ହେବ । ସାଧାରଣତଃ ଅଶ୍ୱିନୀ କୁମାର ଦ୍ୱୟଙ୍କ ରୂପ ଗୁଣ ସମ୍ପର୍କରେ ବହୁପ୍ରକାର ପୌରାଣିକ ବିଶ୍ୱାସ ପ୍ରଚଳିତ ରହିଛି । କିନ୍ତୁ ପ୍ରାବନ୍ଧିକଙ୍କ ମତରେ ଏହା ଗୋଟିଏ ନିର୍ଦ୍ଦିଷ୍ଟ କାଳବିଶେଷ ଓ ଦ୍ୟୁସ୍ଥାନ

ଦେବତା ସୂର୍ଯ୍ୟଙ୍କ ସହ ସମ୍ପର୍କିତ । ପୁରାଣର ବର୍ଣ୍ଣନା ଅନୁସାରେ—ସରଣ୍ୟୁ ଓ ବିବସ୍ୱାନଙ୍କର ସହବାସରୁ ଅଶ୍ୱିନୀ କୁମାର ଦ୍ୱୟଙ୍କ ଜନ୍ମ । ସରଣ୍ୟୁ ଅର୍ଥ ଉଷା ଓ ବିବସ୍ୱାନ ହେଉଛନ୍ତି ସୂର୍ଯ୍ୟ । ନୈରୁକ୍ତ ମତରେ ଅର୍ଦ୍ଧରାତ୍ରି ପରେ ଓ ଜ୍ୟୋତିପ୍ରକାଶ ପୂର୍ବରୁ ଯେ ଅନ୍ଧକାର ଓ କ୍ଷୀଣାଲୋକ ମିଶ୍ରିତ ସମୟ, ତାହାକୁ ଅଶ୍ୱିନୀ କାଳ କୁହାଯାଏ । ଦିବାରାତ୍ରି ମଧ୍ୟରେ ଏହି ସନ୍ଧିକାଳ ଓ ମଧ୍ୟସମୟ ଶାନ୍ତିପ୍ରଦ ଓ ସୁଖଦାୟକ । ଏହି କଳ୍ପନାରେ ବୈଦିକ କବି ରୂପକ ଛଳରେ ଏହି ଶାନ୍ତିପ୍ରଦ ଅନ୍ଧକାର ଓ ଆଲୋକ ଉଭୟଙ୍କୁ ଅଶ୍ୱିନୀ କୁମାର ଦ୍ୱୟ ବୋଲି ସମ୍ବୋଧନ କରିଥିଲେ । ଏହି ରୂପକରେ ସେ ଦୁହିଁଙ୍କର ରୂପ ଓ ଗୁଣ ବିକୃତ ହୋଇଥିଲା । ପରବର୍ତ୍ତୀ କବିଗଣ ସେ ଦୁହିଁଙ୍କୁ ମୂର୍ତ୍ତିକରି ବର୍ଣ୍ଣନା କରିଦେଲେ ।

ପ୍ରବନ୍ଧର ଅଷ୍ଟମ, ନବମ ଓ ଦଶମ ଭାଗରେ ପ୍ରାବନ୍ଧିକ ଈଶ୍ୱର ଉପାସନା ସମ୍ବନ୍ଧରେ ଆଲୋଚନା କରି ଦୃଢ଼ଭାବରେ କହିଛନ୍ତି ଯେ 'ଈଶ୍ୱର' ଶବ୍ଦ ଋଗ୍‌ବେଦରେ ନାହିଁ । ଏହା ପରବର୍ତ୍ତୀକାଳରେ ସୃଷ୍ଟ । ବୈଦିକ ଆର୍ଯ୍ୟମାନେ ପ୍ରକୃତିର ଉପାସକ ଥିଲେ । ଦୃଶ୍ୟମାନ ବିଶ୍ୱବ୍ରହ୍ମାଣ୍ଡ ଜଣେକଦ୍ୱାରା ସୃଷ୍ଟ, ଜଣେକଦ୍ୱାରା ନିୟମିତ, ଜଣେକଦ୍ୱାରା ଶାସିତ, ଏ ବିଶ୍ୱାସ ସେମାନଙ୍କର ନଥିଲା ବୋଲି ଲେଖକ ପ୍ରକାଶ କରିଛନ୍ତି । କିନ୍ତୁ ପରବର୍ତ୍ତୀ ବ୍ୟାଖ୍ୟାକର୍ତ୍ତାଗଣ ବିଭିନ୍ନ ସୂକ୍ତର ଇଚ୍ଛାନୁରୂପ ବ୍ୟାଖ୍ୟା କରି ବେଦରେ ଏକେଶ୍ୱରବାଦ ଥିବାର ଦର୍ଶାଇଛନ୍ତି । ଏ ସମ୍ପର୍କରେ ପ୍ରାବନ୍ଧିକ ଯାସ୍କଙ୍କଠାରୁ ଆରମ୍ଭକରି ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କର ଏକେଶ୍ୱରବାଦ ସମ୍ପର୍କୀୟ ମତାମତଗୁଡ଼ିକର ତର୍କମାକରି ଏହାର ଭିତ୍ତିହୀନତା ଦର୍ଶାଇଛନ୍ତି ।

ପ୍ରବନ୍ଧର ଶେଷ ଭାଗରେ ଆଧୁନିକ ହିନ୍ଦୁଧର୍ମ ସହିତ ବେଦର ସମ୍ପର୍କ ସମ୍ବନ୍ଧରେ ଆଲୋଚନା କରାଯାଇଛି । ହିନ୍ଦୁଧର୍ମରେ ପ୍ରଚଳିତ ଥିବା ଜାତିପ୍ରଥା, ଅସ୍ପୃଶ୍ୟତା, ଅନ୍ୟାନ୍ୟ କୁଳାଚାର, ମୂର୍ତ୍ତିପୂଜା ଓ ପ୍ରେତକୃତ୍ୟ ଇତ୍ୟାଦି ସହିତ ବୈଦିକ-ଧର୍ମର କୌଣସି ସମ୍ପର୍କ ନାହିଁ ବୋଲି ଦର୍ଶାଇ ସେ କହିଛନ୍ତି "ଭାରତର ପ୍ରାଚୀନ ସଭ୍ୟତା ଓ ଧର୍ମ ଅପେକ୍ଷା ହିନ୍ଦୁଶବ୍ଦ ତଥା ହିନ୍ଦୁଧର୍ମ ଓ ସଭ୍ୟତା ଯେ କେତେ ଅର୍ବାଚୀନ, ତାହା କୁହାଯାଇ ନପାରେ । ଯେଉଁଦିନଠାରୁ ଭାରତବାସୀ ପରପ୍ରଦତ୍ତ ହିନ୍ଦୁ ଆଖ୍ୟାରେ ନିଜର ପରିଚୟ ଦେବାକୁ ଗୌରବାନ୍ୱିତ ମନେକଲେ, ସେହିଦିନ-ଠାରୁ ଭାରତର ପ୍ରକୃତ ଗୌରବ ଲୋପ ପାଇଅଛି । ହିନ୍ଦୁ ଶବ୍ଦ ସଦୃଶ ଧର୍ମଟା ମଧ୍ୟ ଜଟିଳ ଓ ମିଶ୍ରିତ ହୋଇଅଛି ।"

## ରାଜା ରାମମୋହନ

ସମାଜ ସଂସ୍କାରକ ତଥା ବ୍ରାହ୍ମସମାଜର ପ୍ରତିଷ୍ଠାତା ସ୍ୱର୍ଗତଃ ରାଜା ରାମମୋହନ ରାୟଙ୍କ ଜନ୍ମ ଶତବାର୍ଷିକୀ ପାଳନ ଉପଲକ୍ଷରେ ଏହି ରଚନାଟି ପ୍ରାବନ୍ଧିକ

୧୯୩୪ ମସିହାରେ 'ଉତ୍କଳସାହିତ୍ୟ' ପତ୍ରିକାରେ ପ୍ରକାଶ କରିଥିଲେ । ଏଥିରେ ସେ ରାଜା ରାମମୋହନ ରାୟଙ୍କ ଅସାମାନ୍ୟ ପ୍ରତିଭାର ସ୍ମରଣ କରିବା ସଙ୍ଗେସଙ୍ଗେ ତାଙ୍କ ତ୍ୟାଗନିଷ୍ଠ ଜୀବନ ସମ୍ବନ୍ଧରେ କେତେକ ସୂଚନା ପ୍ରଦାନ କରନ୍ତି । ଲେଖକ ବାଲ୍ୟାବସ୍ଥାରୁ କେଉଁ ପରିସ୍ଥିତିରେ ରାମମୋହନଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ, ସେହି କୌତୂହଳପୂର୍ଣ୍ଣ କାହାଣୀକୁ ବର୍ଣ୍ଣନା ମଧ୍ୟ କରିଛନ୍ତି । ଧର୍ମନାମରେ ଭାରତୀୟ ଜନଜୀବନକୁ ଆମର ଧର୍ମଗୁରୁମାନେ କିପରି ଅନ୍ଧବିଶ୍ୱାସ ଓ କୁସଂସ୍କାରଚ୍ଛନ୍ନ କରିଯାଇଛନ୍ତି ତାହା ଉଲ୍ଲେଖକରି ସମସାମୟିକ ପରାଧୀନ ଭାରତରେ ରାମମୋହନଙ୍କ ଆଦର୍ଶ ଅନୁସରଣର ଗୁରୁତ୍ୱ ଦର୍ଶାଇଛନ୍ତି । ଲେଖକଙ୍କ ଭାଷାରେ— "ଏବେ ନବବେଦାନ୍ତ ଧର୍ମାବଲମ୍ବୀ ଅସଂଖ୍ୟ ସ୍ୱାମୀ ଅସଂଖ୍ୟ ଆଶ୍ରମର ପ୍ରତିଷ୍ଠା କରିଅଛନ୍ତି । ରାଜା ରାମମୋହନଙ୍କ ଏକତ୍ୱବାଦ ସମସ୍ତଙ୍କର ଗ୍ରାହ୍ୟ, ମାତ୍ର ତାଙ୍କର ବ୍ୟବସ୍ଥା ଓ ସ୍ୱାଧୀନମାର୍ଗ କାହାରି ଗ୍ରାହ୍ୟ ନୁହେଁ । ଏହା ବିସ୍ମୟକର ବ୍ୟାପାର ନୁହେଁ କି ? ମହତ୍ତ୍ୱର ପ୍ରଶଂସାର ନାମାନ୍ତର ମହତ୍ତ୍ୱର ଅନୁକରଣ । ଅନୁକରଣ ବା ଅନୁକରଣର ଚେଷ୍ଟା ନକରି କେବଳ ମହତ୍ତ୍ୱ ପ୍ରଶଂସା ନିରର୍ଥକ ମାତ୍ର ।"

ବିଂଶଶତାବ୍ଦୀର ପ୍ରଥମାର୍ଦ୍ଧବେଳକୁ ଭାରତରେ ବହୁନେତାଙ୍କ ଆବିର୍ଭାବ ଘଟିଥିଲା । କିନ୍ତୁ ରାମମୋହନ ଓ ଏହି ନେତାମାନଙ୍କ ଭିତରେ ଯେଉଁ ମୌଳିକ ପାର୍ଥକ୍ୟ ଥିଲା, ତାହା ଦର୍ଶାଇବାକୁ ଯାଇ ପ୍ରାବନ୍ଧିକ କହିଛନ୍ତି— "ତଦବଧି ଏ ଦେଶରେ ଅନେକ ଯୋଗ୍ୟ ସନ୍ତାନ ଜନ୍ମଗ୍ରହଣ କଲେଣି ଏବଂ ଏ ଦେଶର ଉନ୍ନତି ନିମନ୍ତେ ବହୁ ଚେଷ୍ଟା କଲେଣି, ମାତ୍ର ପ୍ରତ୍ୟେକଙ୍କର ଝୁଙ୍କି ସ୍ୱତନ୍ତ୍ର ଜନନାୟକତ୍ୱ ନିମନ୍ତେ; ସୁତରାଂ ଏକତାର ଅଭାବ ଘଟୁଛି ବୋଲି ମନେହୁଏ । ପୁଣି ଏହା ମଧ୍ୟ ମନେହୁଏ ଯେ, ଏ ଦେଶର ନେତାମାନଙ୍କଦ୍ୱାରା ରାମମୋହନଙ୍କ ଉଦାରତା ଓ ମହତ୍ତ୍ୱ ଠିକ୍‌ରୂପେ ଅନୁସୃତ ହୁଏ ନାହିଁ । ରାମମୋହନଙ୍କ ଉନ୍ନତିର ଭାବଧାରା ଆଧୁନିକ ନେତାମାନଙ୍କ ଠାରୁ ସ୍ୱତନ୍ତ୍ର । ଟଳଟଳ ଜୀର୍ଣ୍ଣ ଭିତ୍ତି ଉପରେ ଜାତୀୟତାର ପ୍ରାଚୀର ନିର୍ମାଣ କରିବାର ତାଙ୍କର ଅଭିପ୍ରାୟ ନଥିଲା । ସେ ମୂଳଦୁଆକୁ ଦୃଢ଼କରି ତହିଁରେ ଏକାତାର ଉନ୍ନତି ଧ୍ୱଜା ପୋତିବାକୁ ବାସନା ରଖିଥିଲେ । ଅନ୍ଧବିଶ୍ୱାସ, କୁସଂସ୍କାରକୁ ଚୂର୍ଣ୍ଣୀଭୂତ କରି ଦେଶର ଯାହା ଶ୍ରେଷ୍ଠ, ଯାହା ଉନ୍ନତ, ଉଦାର; ତାହା ଜଗତ ସମକ୍ଷରେ ପ୍ରଦର୍ଶନ କରିବାକୁ ଇଚ୍ଛା କରିଥିଲେ । ଆଧୁନିକ ପ୍ରଧାନ ନେତା କେତେଜଣ ଅନ୍ଧବିଶ୍ୱାସ ଓ କୁସଂସ୍କାର ରକ୍ଷାଦ୍ୱାରା ଜାତୀୟଉନ୍ନତି ସମ୍ଭବବୋଲି ବିଶ୍ୱାସ କରନ୍ତି । ବିସ୍ମୟକର କଥା ।"

## କୁଞ୍ଜଳେଶ୍ୱର କାର୍ତ୍ତିକେୟ

ଦେବାଦେବୀଙ୍କ ସମ୍ପର୍କରେ ଆମ୍ଭମାନଙ୍କ ମଧ୍ୟରେ ପ୍ରଚଳିତ ବହୁପ୍ରକାର ଅନ୍ଧବିଶ୍ୱାସ କିପରି ନିରର୍ଥକ, ତାହା ଦର୍ଶାଇବା ଉଦ୍ଦେଶ୍ୟରେ ପ୍ରାବନ୍ଧିକ ଏହି କ୍ଷୁଦ୍ର

ପ୍ରବନ୍ଧଟି ୧୯୩୭ ମସିହାରେ 'ସହକାର' ପତ୍ରିକାରେ ପ୍ରକାଶ କରିଥିଲେ । କେନ୍ଦୁଝର ରାଜ୍ୟରେ ଅବସ୍ଥିତ କୁଶଳେଶ୍ୱର ମହାଦେବଙ୍କ ସମ୍ପର୍କରେ ଲୋକଙ୍କ ମଧ୍ୟରେ ଗୋଟିଏ ବିଶ୍ୱାସ ପ୍ରଚଳିତ ଥିଲା ଯେ ସେଠାକୁ ଗଲେ କୁଷ୍ଠ ରୋଗ ଭଲ ହୁଏ ଓ ଦୁରାରୋଗ୍ୟ ବ୍ୟାଧି ମଧ୍ୟ ଭଲ ହେଉଥିଲା । ଏହି ମନ୍ଦିରଟି ଦୁର୍ଗମ ଅରଣ୍ୟ ମଧ୍ୟସ୍ଥ ଗିରିବେଷ୍ଟିତ କ୍ଷୁଦ୍ର ଉପତ୍ୟକା, କଳନାଦିନୀ, ଚିର ପ୍ରବହମାନା ନିର୍ଝରିଣୀ କୂଳରେ ନାଗେଶ୍ୱର ଏବଂ ଭ୍ରମରମାରୀ ବୃକ୍ଷ ପରିପୂର୍ଣ୍ଣ ସ୍ଥାନରେ ଅବସ୍ଥିତ ବୋଲି ସାଧାରଣ ଜନତାଙ୍କ ମଧ୍ୟରେ ପ୍ରସିଦ୍ଧ । ଘଟଣାଚକ୍ରରେ ଲେଖକ କେନ୍ଦୁଝରର ଏହି ମନ୍ଦିର ପରିଦର୍ଶନର ସୁବିଧା ପାଆନ୍ତି । ଏହା ଶିବ ମନ୍ଦିର ନୁହେଁ । କାର୍ତ୍ତିକଙ୍କ ମୂର୍ତ୍ତି ଏଠାରେ ଶିବଙ୍କ ଭଳି ପୂଜା ପାଉଥାନ୍ତି । ମନ୍ଦିର ନିକଟରେ କୌଣସି ବଣଜଙ୍ଗଲ କିମ୍ବା ପାହାଡ଼ ପର୍ବତର ଚିହ୍ନବର୍ଣ୍ଣ ନଥିଲା । ସମତଳ ଧାନକ୍ଷେତ ମଧ୍ୟରେ ଦର୍ଶନଯୋଗ୍ୟ ସ୍ଥାପତ୍ୟବିହୀନ ଏହି ମନ୍ଦିରକୁ ଦେଖି ଲେଖକଙ୍କର ବହୁକାଳପୋଷିତ ଧାରଣା ଭୁଲ ବୋଲି ପ୍ରମାଣିତ ହୋଇଥିଲା ।

## ନର ଓ ନାରୀ

ତିନୋଟି ଭାଗରେ ଏହି ପ୍ରବନ୍ଧଟି ୧୯୩୫-୩୭ ମଧ୍ୟରେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ । ଏଥିରେ ପ୍ରାବନ୍ଧିକ ଜୀବ ଜଗତର ସୃଷ୍ଟି ପ୍ରକ୍ରିୟାଠାରୁ ଆରମ୍ଭ କରି ଆଧୁନିକ ଭାରତୀୟ ସମାଜରେ ନାରୀର ସ୍ଥାନ ପର୍ଯ୍ୟନ୍ତ ପର୍ଯ୍ୟାଲୋଚନା କରିଛନ୍ତି । ପୃଥିବୀ ପୃଷ୍ଠରେ ମଣିଷର ଆବିର୍ଭାବ ସମ୍ବନ୍ଧୀୟ ବିଭିନ୍ନ ଦେଶରେ ପ୍ରଚଳିତଥିବା ବିଶ୍ୱାସକୁ ଅମୂଳକ ବୋଲି ଅଭିହିତ କରି ଲେଖକ ବୈଜ୍ଞାନିକ ମାନଙ୍କ ଦ୍ୱାରା ପ୍ରମାଣିତ ଜୀବର କ୍ରମବିବର୍ତ୍ତନରେ ମଣିଷର ସୃଷ୍ଟିକୁ ଅସ୍ୱୀକାର କରାଯାଇ ପାରିବନାହିଁ ବୋଲି ଉଲ୍ଲେଖ କରିଛନ୍ତି । ପଶୁପକ୍ଷୀଠାରୁ ଆରମ୍ଭ କରି ମଣିଷ ପର୍ଯ୍ୟନ୍ତ ସବୁ ସମାଜରେ ନାରୀ ଓ ପୁରୁଷର ସ୍ୱତନ୍ତ୍ରତା ସମ୍ବନ୍ଧରେ କେତେକ ତାତ୍ତ୍ୱିକ ଆଲୋଚନାକୁ ଏହି ପ୍ରବନ୍ଧରେ ସନ୍ନିବେଶ କରାଯାଇଛି, କେଉଁ ପରିସ୍ଥିତିରେ ନାରୀକୁ ଅବଳା ଦୁର୍ବଳା ବୋଲି ବିବେଚନା କରାଗଲା ତାହାର ବିଶ୍ଳେଷଣ କରି ଭାରତୀୟ ସମାଜରେ ନିର୍ଯ୍ୟାତିତା ନାରୀମାନଙ୍କ ସମ୍ପର୍କରେ ସେ ବର୍ଣ୍ଣନା କରିଛନ୍ତି । ତାଙ୍କର ଭାଷାରେ— "ଭାରତବାସୀ (ଆର୍ଯ୍ୟ) ସଭ୍ୟ ଓ ମାର୍ଜିତ ଜାତି ବୋଲି ପ୍ରସିଦ୍ଧ । ଅନ୍ତତଃ ଭାରତବାସୀଙ୍କ ମୁହଁରେ, ମାତ୍ର ନରର ଦୁର୍ଗତିର ସୀମା ନାହିଁ । ନାରୀର ଦୁର୍ଗତି ଯେ ତତୋଽଧିକ । ଏହା କହିବା ନିଷ୍ପ୍ରୟୋଜନ । ନର ମଧ୍ୟରେ ଜାତିଭେଦ, ବର୍ଣ୍ଣଭେଦ, ଆର୍ଥିକ ଅବସ୍ଥାଭେଦ ଇତ୍ୟାଦି ନାନା ଭେଦର ସୀମା ନାହିଁ । ନାରୀର କଥା ପଚାରେ କିଏ ? ସମସ୍ତ ପାଶ୍ଚାତ୍ୟ ଦେଶରେ ସମ୍ରାଟଠାରୁ ଆରମ୍ଭ କରି ଅତି ଗରିବର ପୋଷାକର କାଟଛାଟରେ ପ୍ରଭେଦ ନାହିଁ, ଥାଇପାରେ ବସ୍ତୁର ମୂଲ୍ୟରେ ।

ମାତ୍ର ଏଦେଶରେ ସମସ୍ତେ ହିନ୍ଦୁ ତଥାପି ପ୍ରଦେଶ ଭେଦରେ କିମ୍ବା ଭେଦରେ ପୁଣି ଜାତି ଭେଦରେ ପୋଷାକର ପ୍ରଭେଦ ରହିଅଛି । ପୋଷାକଦ୍ୱାରା ନର ଆମଣାର ଅମେଳର ପରିଚୟ ଦେଖାଇଥାଏ । ନାରୀ ପରିଚ୍ଛଦର ପାର୍ଥକ୍ୟ ତତୋଽଧିକ । ଏତିକି ନୁହେଁ, ନାରୀ ଅଳଙ୍କାରଦ୍ୱାରା ମଧ୍ୟ ଜାତିର ଓ ଅବସ୍ଥାର ସ୍ୱାତନ୍ତ୍ର୍ୟ ରକ୍ଷାକରେ । ଅଥଚ ସ୍ୱାଧୀନତାକାମୀ ନର ଓ ନାରୀ ଏକତାର ପ୍ରତିବନ୍ଧକ ତୁଚ୍ଛ, ଚିନ୍ତା ପରିହିତ ବସନଭୂଷଣଦ୍ୱାରା ବିରୋଧ ଭାବର ପତାକା ଉତ୍ତୋଳନ କରନ୍ତି ।”

## ସୃଷ୍ଟି

ଏହି କ୍ଷୁଦ୍ର ପ୍ରବନ୍ଧଟି ୧୯୩୬ ମସିହାର ‘ଭକ୍ତପ୍ରଦୀପ’ ତ୍ରୈମାସିକ ପତ୍ରିକାରେ ପ୍ରକାଶିତ ହୋଇଛି । ଏହି ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି ସମ୍ପର୍କରେ ବିଶ୍ୱର ବିଭିନ୍ନ ଲୋକଙ୍କ ମଧ୍ୟରେ ଭିନ୍ନ ଭିନ୍ନ ବିଶ୍ୱାସମାନ ରହିଛି । ଏଭଳି ବିଶ୍ୱାସ ସୃଷ୍ଟି କରିବାରେ ବାଇବେଲ ତଥା ଆମ ପୁରାଣ ଶାସ୍ତ୍ରଗୁଡ଼ିକ ଅଗ୍ରଗାମୀ ଭୂମିକା ନେଇଥିଲେ । ବିଭିନ୍ନ ଧର୍ମସମ୍ପ୍ରଦାୟର ଧର୍ମାଚାର୍ଯ୍ୟମାନଙ୍କଦ୍ୱାରା କୁହାଯାଇଥିଲା ଯେ ଦିନଥିଲା ଯେତେବେଳେ ସୂର୍ଯ୍ୟ, ଚନ୍ଦ୍ର , ଆଲୋକ ପ୍ରଭୃତି କିଛି ନଥିଲା ଏବଂ କାଳକ୍ରମେ ସୃଷ୍ଟିକର୍ତ୍ତାଙ୍କଦ୍ୱାରା ଏସମସ୍ତର ସୃଷ୍ଟି ସମ୍ଭବହେଲା । ପ୍ରାବନ୍ଧିକ ଏଭଳି ଭ୍ରମାତ୍ମକ ପ୍ରଚାରକୁ ଧର୍ମାଚାର୍ଯ୍ୟ-ଗଣଙ୍କ ବିଶ୍ୱବ୍ରହ୍ମାଣ୍ଡ ସମ୍ପର୍କୀୟ ଧାରଣାର କୂପମଣ୍ଡୂକତା ବୋଲି ଅଭିହିତ କରିଛନ୍ତି । ସେ କହିଛନ୍ତି— “ କୁମ୍ଭ ଦେଖି କୁମ୍ଭକାରର ଅନୁମାନ ସହିତ ଜଗତକୁ ଦେଖି ଜଣେ ସୃଷ୍ଟିକର୍ତ୍ତାର ଅନୁମାନ ସାମଞ୍ଜସ୍ୟ ବିହୀନ । ଜ୍ଞାନ ବିକାଶର ବାଲ୍ୟାବସ୍ଥାରେ ଏ ଅନୁମାନ ଆଦରଣୀୟ ହୋଇପାରେ, ମାତ୍ର ଏ ଯୁଗରେ ଏତାଦୃଶ ବିଶ୍ୱାସ ଆଦରଣୀୟ ହୋଇ ନପାରେ ।”

## ନାରାୟଣ

ହିନ୍ଦୁମାନଙ୍କ ପୁରାଣ ଶାସ୍ତ୍ରରେ ‘ନାରାୟଣ’ଙ୍କ ରୂପଗୁଣର ସୁଦୀର୍ଘ ବର୍ଣ୍ଣନାମାନ ରହିଛି । ହିନ୍ଦୁମାନଙ୍କ ବିଶ୍ୱାସ ଯେ ଏହି ନାମର ଉଚ୍ଚାରଣଦ୍ୱାରା ମଣିଷ ସମସ୍ତପ୍ରକାର ପାପରୁ ମୁକ୍ତ ହୋଇ ମୋକ୍ଷ ବା ବୈକୁଣ୍ଠ ପ୍ରାପ୍ତ ହୋଇଥାଏ । ସେଥିପାଇଁ ‘ନାରାୟଣ’ଙ୍କ ଧ୍ୟାନରେ ଧର୍ମଭୀରୁ ହିନ୍ଦୁ ଆତ୍ମବିସ୍ମୃତ ହୋଇଥାଏ । ପୌରାଣିକ ବିଶ୍ୱାସର ଅମୂଳକତା ସହିତ ଏହି ନାମର ରୂପକାର୍ଥ ସମ୍ପର୍କରେ ଆଲୋଚନା କରାଯାଇ ଏହି କ୍ଷୁଦ୍ର ପ୍ରବନ୍ଧଟି ୧୯୩୭ ମସିହାର ‘ଭକ୍ତ ପ୍ରଦୀପ’ ପତ୍ରିକାରେ ସ୍ଥାନିତ ହୋଇଥିଲା ।

ସର୍ବପ୍ରାଚୀନ ରଚନା ‘ଋଗ୍‌ବେଦ’ରେ ନାରାୟଣଙ୍କ ରୂପଗୁଣର ବର୍ଣ୍ଣନା ନାହିଁ କିମ୍ବା ଅନ୍ୟ ବେଦରେ ମଧ୍ୟ ନାହିଁ ବୋଲି ଲେଖକ ଉଲ୍ଲେଖ କରିଛନ୍ତି । ପରବର୍ତ୍ତୀ କାଳରେ ଶତପଥ ବ୍ରାହ୍ମଣରେ ଜଣେ ନାରାୟଣଙ୍କ ବର୍ଣ୍ଣନା ଅଛି, ଯେ କି ନରମେଧ

ଯଜ୍ଞ କରିଥିଲେ । କିନ୍ତୁ ଅନ୍ୟାନ୍ୟ ଦେବାଦେବୀମାନଙ୍କର ପରିକଳ୍ପନା ଭଳି ବିଭିନ୍ନ ପୁରାଣରେ 'ନାରାୟଣ' ଶବ୍ଦର ବ୍ୟୁତ୍ପତ୍ତି ସହିତ ଏହାଙ୍କ ରୂପଗୁଣ ଐଶ୍ୱର୍ଯ୍ୟର ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ । ସେଥିମଧ୍ୟରୁ ସର୍ବଜନବିଦିତ ପ୍ରଳୟ ଜଳରେ ବଟପତ୍ରରେ ଶାୟମାନ ନାରାୟଣଙ୍କ ରୂପ ବର୍ଣ୍ଣନାକୁ ପ୍ରତୀକାତ୍ମକ ବୋଲି ଦର୍ଶାଇ ପ୍ରାବନ୍ଧିକ କହିଛନ୍ତି ଯେ ନର ହିଁ ନାରାୟଣ । ତାହାଙ୍କ ଭାଷାରେ—"ମାତୃଗର୍ଭ ଅନନ୍ତ ବ୍ରହ୍ମାଣ୍ଡ ଗୋଲକ । ତହିଁର ଜଳରାଶିରେ ଶିଶୁର ଉତ୍ପତ୍ତି । ସେହି ଜଳରାଶିରେ ବଟଗୁନଶାୟୀ ନାରାୟଣର କ୍ରୀଡ଼ା, ଶିଶୁ ନାରାୟଣ ଗର୍ଭସ୍ଥ ଜଳରାଶି ଭିନ୍ନ ବାହ୍ୟିକ ବସ୍ତୁ ସହିତ ସମ୍ବନ୍ଧଶୂନ୍ୟ । ଆହାର ନାହିଁ, ନିଦ୍ରା ନାହିଁ, ନିଃଶ୍ୱାସ ପ୍ରଶ୍ୱାସ ନାହିଁ । ସଦାଜାଗ୍ରତ ବୋଇଲେ ଚଳେ । ଶିଶୁ ନାରାୟଣ ନାଭିରେ କମଳ । ମାତୃଦେବୀ ଏହି କମଳର ଅଧିଷ୍ଠାତ୍ରୀ ଦେବତା, ସୃଷ୍ଟି କର୍ତ୍ତ୍ରୀ । ଶିଶୁ-ନାରାୟଣରେ ଜନ୍ମ ବା ସଂସାର ଦର୍ଶନ ମାତୃକର୍ତ୍ତୃକ ଜଗତ ସୃଷ୍ଟି । ଶିଶୁ ଭୂମିଷ୍ଠ ହେଲାରୁ ସୃଷ୍ଟି କାର୍ଯ୍ୟ ଶେଷ । ଶିଶୁର ନାଭିଚ୍ଛେଦନ ଉତ୍ତାରୁ ନାଭି କମଳର ଅନ୍ତର୍ଦ୍ଧାନ । ଜନ୍ମାବଧି ଗର୍ଭସ୍ଥ ଶିଶୁର କାର୍ଯ୍ୟକଳାପଦ୍ୱାରା ସାଧକ ମନରେ ସୃଷ୍ଟି ପ୍ରଣାଳୀର ଅନ୍ତର୍ଦ୍ଦୋଦ୍‌ଗମ ହେଲା । ନର, ଜୀବ ମଧ୍ୟରେ ଶ୍ରେଷ୍ଠ ହେତୁ ନରକୁ ନାରାୟଣ ଆଖ୍ୟା ଦିଆଗଲା ।"

## ବୁଦ୍ଧଦେବଙ୍କ ଜନ୍ମସ୍ଥାନ

ଏହି ପ୍ରତିବାଦମୂଳକ ଦୀର୍ଘ ପ୍ରବନ୍ଧଟି ୧୯୩୬ ମସିହା 'ଉତ୍କଳ ସାହିତ୍ୟ' ପତ୍ରିକାରେ ଶ୍ରାବଣ ସଂଖ୍ୟାରେ ପ୍ରକାଶିତ । ମିଥ୍ୟା ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ଦେଶପ୍ରେମିକତା ବା ଜାତୀୟତାବାଦ କିପରି ଐତିହାସିକ ସତ୍ୟକୁ ବିଭ୍ରାନ୍ତ କରେ, ପ୍ରାବନ୍ଧିକ ତାଙ୍କର ଅଧ୍ୟବସାୟଦ୍ୱାରା ଏହା ପ୍ରମାଣ କରିଛନ୍ତି । ସମୟର ବିବର୍ତ୍ତ ଗତିରେ ବୌଦ୍ଧ ଧର୍ମର ଅତୀତ ଗୌରବ ଭାରତରୁ ଅନ୍ତର୍ହିତ ହୋଇଛି । ବୌଦ୍ଧପୀଠ ହିନ୍ଦୁ ତୀର୍ଥରେ ପରିଣତ ହୋଇଛି । ବୌଦ୍ଧ ମୂର୍ତ୍ତିମାନ ହିନ୍ଦୁମାନଙ୍କର ବିଭିନ୍ନ ଦେବାଦେବୀ ରୂପେ ପୂଜିତ ହେଉଛନ୍ତି । ତଥାପି ବୁଦ୍ଧଙ୍କୁ ନିଜ ନିଜର ସମ୍ପତ୍ତି ରୂପେ ପ୍ରମାଣିତ କରିବାପାଇଁ ଭାରତର ବିଭିନ୍ନ ଜାତି ମଧ୍ୟରେ ଯେଉଁ ପ୍ରତିଯୋଗିତା, ସେଥିରେ ପ୍ରାବନ୍ଧିକ କ୍ଷୋଭ ପ୍ରକାଶ କରିଛନ୍ତି । ବର୍ତ୍ତମାନସୁଦ୍ଧା କେତେକ ତଥାକଥିତ ଓଡ଼ିଆ ବୁଦ୍ଧିଜୀବୀ ପ୍ରମାଣ କରିବାକୁ ଚେଷ୍ଟା କରନ୍ତି ଯେ ବୁଦ୍ଧଦେବଙ୍କ ଜନ୍ମସ୍ଥାନ ଓଡ଼ିଶାର କପିଳେଶ୍ୱର ଗ୍ରାମରେ । "୧୯୬୯ରେ ନେପାଳ ବୁଦ୍ଧଙ୍କ ଜନ୍ମଭୂମି ହୋଇନପାରେ" ଶୀର୍ଷକ ଏକ ପ୍ରବନ୍ଧ ଦୈନିକ 'ଆଶା'ରେ ପ୍ରକାଶିତ ହୋଇଥିଲା । ପରେ ବିଶିଷ୍ଟ ଆଲୋଚକ ସତ୍ୟନାରାୟଣ ରାଜଗୁରୁଙ୍କ ଧାରାବାହିକ ପ୍ରବନ୍ଧ "ଉତ୍କଳରେ ବୌଦ୍ଧଧର୍ମର ମାହାତ୍ମ୍ୟ" ଶୀର୍ଷକ ପ୍ରବନ୍ଧର ପରିଶିଷ୍ଟରେ ସେ "ଓଡ଼ିଶାରେ ବୁଦ୍ଧଦେବଙ୍କ ଜନ୍ମ" ଶୀର୍ଷକ ପ୍ରବନ୍ଧ ପ୍ରକାଶ କଲେ । ଏହି ଦୁଇଲେଖାର ଏକମାତ୍ର ବକ୍ତବ୍ୟ

ଥିଲା ଯେ ବୁଦ୍ଧଦେବଙ୍କ ଜନ୍ମସ୍ଥାନ 'କପିଳବସ୍ତୁ' ଓଡ଼ିଶାର ଆଧୁନିକ କପିଳେଶ୍ୱର ଗ୍ରାମ । ଏହି ଦୁଇଟି ପ୍ରବନ୍ଧର ଭିତ୍ତି ମଧ୍ୟ ଏକ । କପିଳେଶ୍ୱର ଗ୍ରାମରୁ ଆବିଷ୍କୃତ ହୋଇଥିବା ଗୋଟିଏ 'ଶ୍ରେଷ୍ଠ ଶିଳାଲେଖ'କୁ ଆଧାର କରି ଏହି ଦୁଇଟି ପ୍ରବନ୍ଧରେ ଐତିହାସିକ ତଥ୍ୟକୁ ବିକୃତ କରିବାର ପ୍ରୟାସରେ ବ୍ୟଥିତ ହୋଇ ପ୍ରାବନ୍ଧିକ ଜଣକର ବିଭିନ୍ନ ପ୍ରମାଣ ସହ ସେମାନଙ୍କ ଯୁକ୍ତିକୁ ଖଣ୍ଡନ କରିଛନ୍ତି । ବିଭିନ୍ନ ବୌଦ୍ଧଧର୍ମ ଗ୍ରନ୍ଥ ତଥା ଚୀନ ପରିବ୍ରାଜକ ଫାହିୟାନ୍, ହୁଏନ୍‌ସାଂ ଓ ଇତ୍‌ସିଙ୍ଗଙ୍କ ଭ୍ରମଣବୃତ୍ତାନ୍ତରୁ ବହୁ ଉଦାହରଣ ଦେଇ ଏହି ଦୁଇ ଉତ୍କଳୀୟ ଆଲୋଚକଙ୍କର ମତର ଭିତ୍ତିହୀନତା ପ୍ରମାଣ କରାଯାଇଛି । କପିଳେଶ୍ୱରରୁ ମିଳିଥିବା ଶିଳାଲେଖର ଅର୍ବାଚୀନତା କପରି ବିଭିନ୍ନ ଐତିହାସିକଙ୍କଦ୍ୱାରା ସ୍ୱୀକୃତ ହୋଇଛି, ତାହା ଦର୍ଶାଇ ଅଶୋକଙ୍କ 'ଲୁମ୍ବିନୀ ସ୍ତମ୍ଭଲେଖ'ର ପର୍ଯ୍ୟାଲୋଚନା ମଧ୍ୟ ପ୍ରବନ୍ଧରେ କରାଯାଇଛି । ଶେଷରେ ପ୍ରାବନ୍ଧିକଙ୍କ ବକ୍ତବ୍ୟ ହେଉଛି—"ଅଗାଧ ବୌଦ୍ଧ ଗ୍ରନ୍ଥ ଜଗଦ୍‌ଗୌରବ ହିମାଳୟର ପାଦଦେଶରେ ଜଗଦ୍‌ବନ୍ଦ୍ୟ ବୁଦ୍ଧଦେବଙ୍କର ଜନ୍ମସ୍ଥାନ କପିଳବସ୍ତୁ ନଗର ବିଦ୍ୟମାନ ବୋଲି ବଜ୍ରନିର୍ଘୋଷରେ ପ୍ରକାଶ କରୁଅଛନ୍ତି । ଭକ୍ତ ପରିବ୍ରାଜକଗଣ ସୁଦୂର ଚୀନ୍ ଦେଶରୁ ସେହି ବୁଦ୍ଧ ଜନ୍ମସ୍ଥାନ ଦେଖି ଚରିତାର୍ଥତା ଲାଭ ନିମନ୍ତେ ସ୍ୱାସ୍ଥ୍ୟ ଓ ଅର୍ଥବ୍ୟୟ କରି ଏ ଦେଶକୁ ଆସି ସେହି ତୀର୍ଥରେ ଅଶ୍ରୁସିକ୍ତ ପୁଷ୍ପାଞ୍ଜଳି ଦାନ କରିଯାଇଅଛନ୍ତି । ସେ ଆଜି ଯୁଗଯୁଗାନ୍ତର କଥା । ଆଜି ଯେବେ କେତେଜଣ ଗୋଟିଏ ତୁଚ୍ଛ ପଦାର୍ଥ ଦେଖି ସେହି ସମସ୍ତ ସତ୍ୟକୁ ମିଥ୍ୟା ପ୍ରତିପନ୍ନ କରିବାକୁ ଚେଷ୍ଟା କରିବେ, ତେବେ ଏ ଦେଶ ପକ୍ଷରେ ଏହା କମ୍ ଲଜ୍ଜା ଓ ନିନ୍ଦାର ବିଷୟ ନୁହେଁ । ଭାରତର ପ୍ରାଚୀନ ଇତିହାସ ନାହିଁ । ପ୍ରାଚୀନ ବୀରପୁରୁଷ, ରାଜା ସମସ୍ତେ ପୁରାଣ ପ୍ରସିଦ୍ଧ ଦେବତା ଆଖ୍ୟାରେ ମନୁଷ୍ୟତ୍ୱରୁ ଉର୍ଦ୍ଧ୍ୱରେ ରହିଲେ । ବୁଦ୍ଧ ଚରିତ ହିଁ ଏକମାତ୍ର ଐତିହାସିକ ସତ୍ୟ ବୋଲି ଜଗତ୍‌ବାସୀଙ୍କର ଧାରଣା ହୋଇଅଛି । ଏ ଦେଶବାସୀ ତାହାକୁ ଅଳୀକ ବୋଲି ପ୍ରତିପନ୍ନ କରିବାକୁ ବସି କେଉଁ ମହତ୍ତ୍ୱ ଉପାର୍ଜନ କରିବେ ? ଅଧିକ ଲେଖିବା କ'ଣ ? ବୁଦ୍ଧଦେବଙ୍କ ଅନୁଡ଼ଶୀଳ ଯେଣୁ ଏ ଦେଶବାସୀ ଯେବେ ଅଦ୍ୟାପି ହଢହାନ, ତେବେ ଭାରତବାସୀର ଭୂତ, ଭବିଷ୍ୟତ, ବର୍ତ୍ତମାନ ଘୋର ଅନ୍ଧକାରଚ୍ଛନ୍ନ ।"

## ଆକୃତି ଅନାଦି କାଳରୁ ଅଛି କି ?

ଚିରାଚରିତ ଭାରତୀୟ ବିଶ୍ୱାସ ସମ୍ପର୍କରେ ଏହି କ୍ଷୁଦ୍ର ପ୍ରବନ୍ଧଟି ୧୯୩୮ ମସିହା 'ସହକାର' ପତ୍ରିକାରେ ପ୍ରକାଶ ପାଇଥିଲା । ବେଦକୁ ଆଶ୍ରୟ କରି ପରବର୍ତ୍ତୀକାଳର ପୁରାଣ ଓ ଅନ୍ୟାନ୍ୟ ଧର୍ମଶାସ୍ତ୍ରରେ ଆକୃତି ଓ ଜାତି ଅନାଦିକାଳରୁ ରହିଛି ବୋଲି ଗୋଟିଏ ବିଶ୍ୱାସ ଭାରତୀୟ ଜନମାନସରେ ଦୃଢ଼ୀଭୂତ ହୋଇଛି । ଏହା ଯେ ସମ୍ପୂର୍ଣ୍ଣ କପୋଳକଳ୍ପିତ, ତାହା ଦର୍ଶାଇବାକୁ ଯାଇ ପ୍ରାବନ୍ଧିକ ଆଧୁନିକ ଯୁଗର କେତେକ

ବୈଜ୍ଞାନିକ ଆବିଷ୍କାରର ଉଦାହରଣ ଏଥିରେ ପ୍ରଦାନ କରିଛନ୍ତି । ଲେଖକଙ୍କ ମତରେ ପୃଥିବୀ ପୃଷ୍ଠରେ ବିଭିନ୍ନ କାଳରେ ଭିନ୍ନ ଭିନ୍ନ ଆକୃତିବିଶିଷ୍ଟ ଜୀବ ଥିଲେ । ସେମାନଙ୍କ ମଧ୍ୟରୁ କେତେକଙ୍କର ଅସ୍ତିତ୍ୱ ବର୍ତ୍ତମାନ ନାହିଁ । ପୁନଶ୍ଚ କେତେ ପ୍ରକାରର ନୂଆ ନୂଆ ଆକୃତିବିଶିଷ୍ଟ ଜୀବ ସୃଷ୍ଟି ହେଉଛନ୍ତି । ଏଣୁ ଆକୃତି ଯେ ଅନାଦିକାଳରୁ ରହିଛି ଏବଂ ତାହା ଅପରିବର୍ତ୍ତିନୀୟ, ଏଭଳି ବିଶ୍ୱାସ ସମ୍ପୂର୍ଣ୍ଣ ଅମୂଳକ ।

## ମୂଢ଼ ଧାର୍ମିକତା

ସ୍ୱାର୍ଥସିଦ୍ଧି ନିମନ୍ତେ 'ଧର୍ମ' ଶବ୍ଦର ବିକୃତ ଅର୍ଥକରି ବିଭିନ୍ନ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ଯେଉଁ ବାଦବିବାଦର ସୂତ୍ରପାତ ହୋଇଛି, ତାହାକୁ ଲକ୍ଷ୍ୟକରି ପ୍ରାବନ୍ଧିକ ଏହି କ୍ଷୁଦ୍ର ପ୍ରବନ୍ଧଟି ୧୯୩୮ ମସିହାର 'ଭକ୍ତପ୍ରତାପ' ପତ୍ରିକାରେ ପ୍ରକାଶ କରିଥିଲେ । ସେହି ସମୟରେ ଭାରତର ସ୍ୱାଧୀନତା ସଂଗ୍ରାମରେ ହିନ୍ଦୁ ଓ ମୁସଲମାନ ଧର୍ମକୁ ନେଇ ଯେଉଁ ଶୀତଳ ସଂଗ୍ରାମ, ଦ୍ୱିତୀୟ ମହାଯୁଦ୍ଧର ପୂର୍ବାବସ୍ଥାରେ ପାଶ୍ଚାତ୍ୟ ଦେଶମାନଙ୍କ ମଧ୍ୟରେ ସୃଷ୍ଟି ହୋଇଥିବା ଯୁଦ୍ଧ ବିଭୀଷିକାର ପୃଷ୍ଠଭୂମିରେ ଏ ପ୍ରବନ୍ଧ ରଚିତ ହୋଇଥିଲା । ଲେଖକଙ୍କ ମତରେ ସାଧାରଣ ମଣିଷ ଯେଉଁ ଅର୍ଥରେ ଧର୍ମକୁ ବୁଝନ୍ତି, ପ୍ରକୃତରେ 'ଧର୍ମ'ର ଅର୍ଥ ତାହାଠାରୁ ବହୁ ଊର୍ଦ୍ଧ୍ୱରେ । ଆମେ ଯାହାକୁ 'ଧର୍ମ' ବୋଲି କହୁ, ତାହା କେବଳ ବିଶ୍ୱାସ ବା (Faith) । ତେଣୁ ଆମର ଏହି ବ୍ୟାବହାରିକ ଧର୍ମ ଆଲୋକ, ଉତ୍ତାପ ଓ ବାୟୁ ପରି ନୁହେଁ । ଏହା କୃତ୍ରିମ— ଏଣୁ ଏହା ସମଷ୍ଟିର ପ୍ରାପ୍ୟ ନୁହେଁ, ବ୍ୟଷ୍ଟିର ପ୍ରାପ୍ୟ । ବ୍ୟଷ୍ଟିର ବିଶ୍ୱାସକୁ ବ୍ୟଷ୍ଟି ନିଜ ସ୍ୱାର୍ଥରେ ଗ୍ରହଣ କରିଛି । ସେଥିପାଇଁ ସ୍ୱାର୍ଥର ସଂଘାତରୁ ଧର୍ମ ଧର୍ମ ମଧ୍ୟରେ ବିଭେଦ ଓ ବିବାଦ । 'ଧର୍ମ'ର ଏହି ସ୍ୱାର୍ଥକୈନ୍ଦ୍ରିକ ବ୍ୟବହାରକୁ ବୁଝାଇବାକୁ ଯାଇ ସେ କହିଛନ୍ତି—"ବ୍ୟଷ୍ଟିର ବିଶ୍ୱାସକୁ ବ୍ୟଷ୍ଟି ନିଜ ସ୍ୱାର୍ଥରେ ଗ୍ରହଣ କରିଛି । ଏକ ବିଶ୍ୱାସର ଅନୁସରଣକାରୀ ଅନେକ ମିଳି ଗୋଟାଏ ଦଳ ଗଠିତ ହୋଇଅଛି । ମାତ୍ର ଏତାଦୃଶ ବିଶ୍ୱାସକୁ ସମଷ୍ଟିର ଧର୍ମ ବୋଲିହେବ ନାହିଁ । ଖ୍ରୀଷ୍ଟ ପ୍ରବର୍ତ୍ତିତ ବିଶ୍ୱାସ ମହମ୍ମଦ ଭକ୍ତମାନଙ୍କର ଗ୍ରାହ୍ୟ ନୁହେଁ । ଇହୁଦୀମାନଙ୍କର ଖ୍ରୀଷ୍ଟ ବା ମହମ୍ମଦ ଧର୍ମରେ ଆସ୍ଥା ନାହିଁ । ପୁରାଣ ଧର୍ମୀମାନେ ଜଗତର ସମସ୍ତ ଧର୍ମକୁ ଘୃଣା ଚକ୍ଷୁରେ ଦେଖନ୍ତି ।"

ଆଧୁନିକ ସମାଜରେ ଏତାଦୃଶ ଧର୍ମମତର ପ୍ରଚାର ଓ ପ୍ରସାର ଅଧିକରୁ ଅଧିକ ବୃଦ୍ଧି ପାଉଥିବାରୁ ଲେଖକ ଏଥିପାଇଁ ବିଭିନ୍ନ ଧର୍ମର ପଲ୍ଲବଗ୍ରାହୀ ଶିଷ୍ୟ ପ୍ରଶିଷ୍ୟମାନଙ୍କୁ ଦୋଷାରୋପ କରିଛନ୍ତି । ସଂସାରରେ ସମସ୍ତପ୍ରକାର ଅଶାନ୍ତି ଓ ଅସନ୍ତୋଷ ମୂଳରେ ଏହି ଧର୍ମ-ବିଶ୍ୱାସର ଅପପ୍ରୟୋଗ ବୋଲି କହି ସେ ଏହାକୁ ମୂଢ଼ ଧାର୍ମିକତା ନାମରେ ନାମିତ କରିଛନ୍ତି । ଲେଖକଙ୍କ ଭାଷାରେ—"ଧର୍ମର ସାର, ଯାହା ମାନବକୁ ସୁଖ ଶାନ୍ତି ଦେଇପାରେ, ବିରୋଧ ଘୁଞ୍ଚାଇପାରେ, ତାକୁ ତ୍ୟାଗକରି ସ୍ୱାର୍ଥାନ୍ଧ

ଧର୍ମଧ୍ୱଜୀମାନଙ୍କର ପଦାଙ୍କ ଅନୁସରଣ କରି ବିଶୃଙ୍ଖଳା ଘଟାଇବାର ଚେଷ୍ଟା ମୂଢ଼ ଧାର୍ମିକତା ନୁହେଁ କି ? ମୂଢ଼ ଧାର୍ମିକତାର ବୃଦ୍ଧି ସଙ୍ଗେ ସଙ୍ଗେ ଜଗତରେ ଅଶାନ୍ତିର ମାତ୍ରା ବୃଦ୍ଧି ପାଉଅଛୁ ।

**ଆର୍ଯ୍ୟ ସଂସ୍କୃତିର କି ଏହି ପରିଣତି ?**

ଏହି ପ୍ରବନ୍ଧଟି ୧୯୩୮ ମସିହାର 'ସହକାର' ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏଥିରେ ପ୍ରାବନ୍ଧିକ ଭାରତୀୟ ସଂସ୍କୃତିର ଅବକ୍ଷୟ ସମସାମୟିକ ଭାରତବାସୀଙ୍କର ବିଭିନ୍ନ ବିଷୟରେ ବୃଥା ଅସ୍ଫାଳନକୁ ଦର୍ଶାଇଛନ୍ତି । ବିଶ୍ୱର ଅନ୍ୟାନ୍ୟ ଦେଶର କଳା, ସାହିତ୍ୟ, ସ୍ଥାପତ୍ୟ ଓ ପ୍ରାକୃତିକ ବସ୍ତୁସମୂହର ଉଦାହରଣ ଦେଇ ପ୍ରାବନ୍ଧିକ କହିଛନ୍ତି ଯେ ଆଜିର ଭାରତବାସୀ ଯେଉଁସବୁ ବିଷୟକୁ ନେଇ ନିଜର ଉନ୍ନତ ଅତୀତକୁ ପରିଚୟ କରନ୍ତି ଓ ବିଶ୍ୱର ଶ୍ରେଷ୍ଠଜାତି ରୂପେ ପ୍ରମାଣିତ କରାଇବାକୁ ଚେଷ୍ଟା କରନ୍ତି, ବାସ୍ତବରେ ଅନ୍ୟାନ୍ୟ ଦେଶ ଓ ଜାତିର ସେହିସବୁ ବିଷୟ ସହିତ ତୁଳନା କଲେ ଭାରତବାସୀଙ୍କ ଏହି ଆତ୍ମଶ୍ଳାଘାର କୌଣସି ଅର୍ଥ ନାହିଁ । ସେ କହିଛନ୍ତି ଯେ ସର୍ବପ୍ରାଚୀନ ଭାରତୀୟ ସାହିତ୍ୟ ଋକବେଦରେ ଭାରତୀୟ ସଂସ୍କୃତିର ଯେଉଁ ପରିଚୟ ମିଳେ, ପରବର୍ତ୍ତୀ ଉପନିଷଦ, ପୁରାଣ ଓ କାବ୍ୟ ଯୁଗରେ ତାହାର ବିପୁଳ ଅବକ୍ଷୟ ଘଟିଛି । ଲେଖକଙ୍କ ଭାଷାରେ—"ବଡ଼ ଆଶ୍ଚର୍ଯ୍ୟର ବିଷୟ ଋକ୍‌ବେଦର ପରବର୍ତ୍ତୀ କୌଣସି ଜାତୀୟ ସାହିତ୍ୟ ବା ଇତିହାସ ନାହିଁ । କିମାକାର ପରିବର୍ତ୍ତନ ଘଟିଲା । କିଏ ଜାଣେ ? ଆମ୍ଭମାନଙ୍କର ହସ୍ତଗତ ହୁଏ ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦ । ଏସବୁ ଗ୍ରନ୍ଥରେ ବୈଦିକ ସଂସ୍କୃତିର ସମ୍ମାନ ନାହିଁ । ଦେଶବୃଦ୍ଧିର ଆକାଂକ୍ଷା, ବୀରପୂଜା ଇଚ୍ଛା, ଉତ୍ତେଜନା ବାକ୍ୟ, ଜାତୀୟଜୀବନ ଗଠନର ଉତ୍ତେଜନା କିଛି ହିଁ ନାହିଁ । ଋଗ୍‌ବେଦ ସଂସ୍କୃତିର ପରିଣାମ କି ଏହି ଯାଗଯଜ୍ଞ, ଅରଣ୍ୟବାସ ଓ ମୁକ୍ତିବାଟ ଅନ୍ୱେଷଣ, ବ୍ରହ୍ମଚିନ୍ତା ।"

ପୃଥିବୀରେ ଅନ୍ୟାନ୍ୟ ଦେଶରେ ଥିବା ପୁରାତନ କୀର୍ତ୍ତିସମୂହର ପର୍ଯ୍ୟାଲୋଚନା କରି ଭାରତର ପ୍ରାଚୀନ କୀର୍ତ୍ତିଗୁଡ଼ିକ ତାହା ତୁଳନାରେ କିପରି କ୍ଷୁଦ୍ର ଏ ବିଷୟ ଉଲ୍ଲେଖ କରି ସେ କହିଛନ୍ତି—"ଅନ୍ୟ ଦେଶମାନଙ୍କ କୀର୍ତ୍ତିମେଖଳାର ସେ ଯତ୍‌ସାମାନ୍ୟ ବର୍ଣ୍ଣନା ଦିଆଗଲା, ତାର ତୁଳନାରେ ଭାରତବର୍ଷର ଜନକୃତ ଗୌରବମୟ ପ୍ରାଚୀନ କୀର୍ତ୍ତ୍ୟାଦି ଅଛି କି ? ନାହିଁ, କାରଣ ? ଧର୍ମବିଦ୍ୱେଷ ଓ ଭାଇଭାଗ । ରାଜାମାନେ ମାତୃଭୂମିକୁ ଛିନ୍ନବିଚ୍ଛିନ୍ନ କରି ଭାଗ କଲେ ।"

ସର୍ବୋପରି ଜାତିଭେଦ ଓ ଜାତିବିଦ୍ୱେଷ ଏକତାର ଅନ୍ତରାୟ ହେଲା । ରାଜ୍ୟମାନ ଖଣ୍ଡ ଖଣ୍ଡ ହେବାରୁ ବୃହତ୍ ବ୍ୟାପାର କ୍ରମଶଃ ଅର୍ଥର ଅନାଟନ ହେଲା ।

ଆଜ ଯେଉଁ ରାଜ୍ୟ ସୂର୍ଯ୍ୟବଂଶର, କାଲି ତାହା ଚନ୍ଦ୍ରବଂଶର କିମ୍ବା ଭୋଜବଂଶର । ଅକ୍ଷୟକୀର୍ତ୍ତି ରଖାଯିବ କେଉଁ ଆଶାରେ ?''

ସମସାମୟିକ ଭାରତୀୟମାନଙ୍କର ନିଷ୍ଫଳ ଆତ୍ମପ୍ରଶଂସାରେ ଲେଖକ କ୍ଷୋଭ ପ୍ରକାଶକରି ଏହି ତୁଳନାତ୍ମକ ପ୍ରବନ୍ଧଟି ରଚନା କରିଛନ୍ତି ।

**ସତ୍ୟଂ ପରଂଧୀମହି**

ଶ୍ରୀମଦ୍ ଭାଗବତ ପ୍ରଥମସ୍କନ୍ଧ ପ୍ରଥମ ଶ୍ଳୋକର ଶେଷ ବାକ୍ୟକୁ ନେଇ ଭାରତୀୟ ପୁରାଣଗୁଡ଼ିକରେ ଭଗବାନ ସମ୍ବନ୍ଧୀୟ ଯେଉଁ ସବୁ କପୋଳକଳ୍ପିତ ଆଖ୍ୟାୟିକାମାନ ସୃଷ୍ଟି ହୋଇଛି, ତାହାର ବିଶ୍ଳେଷଣ କରି ଏହି ପ୍ରବନ୍ଧଟି ରଚିତ । ଏହି ଆଲୋଚନା ମଧ୍ୟଦେଇ ଲେଖକ ଦର୍ଶାଇଛନ୍ତି ଯେ ବେଦରେ କିମ୍ବା ଉପନିଷଦଗୁଡ଼ିକରେ ଅବତାରବାଦର ଚିହ୍ନ ନଥିଲେ ମଧ୍ୟ ପରବର୍ତ୍ତୀ ପୁରାଣଗୁଡ଼ିକ ଦେବାଦେବୀମାନଙ୍କୁ ଶାରୀରିକ ଆବିର୍ଭାବ ଘଟାଇ ବସ୍ତୁ ଧର୍ମବାଦର ସୃଷ୍ଟି କରିଛନ୍ତି । ଏହାଦ୍ୱାରା ଯେଉଁ ସତ୍ୟକୁ ଧ୍ୟାନ କରିବାପାଇଁ କୁହାଯାଇଥିଲା, ପ୍ରକୃତରେ ସେ ସତ୍ୟକୁ ସମ୍ପୂର୍ଣ୍ଣ ପରିହାର କରାଯାଇଛି । ପୁରାଣର ଏହିସବୁ ଅସତ୍ୟ ଓ ଅଳୀକ ଭାବନାକୁ ସମାଲୋଚନା କରିବାକୁ ଯାଇ ଲେଖକ କହିଛନ୍ତି—''ଉପନିଷଦ୍‌ର ବ୍ରହ୍ମ ଯେଉଁ ବଚନ ଓ ମନର ଅଗୋଚର ସେ ପୁଣି ପୁରାଣ ଯୁଗରେ ରକ୍ତମାଂସ ଶରୀରରେ ଭାରତବାସୀଙ୍କ ସହିତ ସହବାସ ଓ କ୍ରୀଡ଼ାକୌତୁକରେ କିଛିଦିନ କାଳାତିପାତ କରିଥିଲେ ଏବଂ ଅବଶେଷରେ ତାଙ୍କର ବନ୍ଧୁବାନ୍ଧବ ବୟସ୍ୟ ପ୍ରେମିକ ଓ ଭକ୍ତଗଣଙ୍କୁ ଅପାର ଦୁଃଖ ଓ ଦାସ୍ୟ ସାଗରରେ ଭସାଇ ଚାଲିଗଲେ ଏବଂ ଡାକିଲେ ମଧ୍ୟ କର୍ଣ୍ଣପାତ କରୁନାହାନ୍ତି, ଏହା ଭାବିଲେ ବିସ୍ମୟର ସୀମା ରହେନାହିଁ ।''

ଶେଷରେ ସେ କହିଛନ୍ତି ଯେ ଏହାଦ୍ୱାରା କୃଷ୍ଣ ପ୍ରଭୃତିଙ୍କୁ ସ୍ୱୟଂ ଭଗବାନ କରି ନରମହତ୍ତ୍ୱକୁ ଖର୍ବ କରାଯାଇଥିଲା ଏବଂ ସତ୍ୟ ଅନୁସନ୍ଧାନ କରିବାରୁ ଭାରତବାସୀଙ୍କୁ ବିରତ କରାଯାଇଅଛି ।

**ବୁଦ୍ଧ**

ବୌଦ୍ଧ ଧର୍ମର ଅହିଂସା ନୀତିକୁ ପ୍ରଶଂସା କରି ପ୍ରାବନ୍ଧିକ ଏହି କ୍ଷୁଦ୍ର ପ୍ରବନ୍ଧଟି ୧୯୩୯ ମସିହାର 'ଉପହାର' ପତ୍ରିକାରେ ପ୍ରକାଶ କରିଥିଲେ । ସେତେବେଳେ ଭାରତର ସ୍ୱାଧୀନତା ଆନ୍ଦୋଳନରେ ଗାନ୍ଧିଜୀଙ୍କ ଅହିଂସା ନୀତି ବିଶିଷ୍ଟ ସ୍ଥାନ ଅଧିକାର କରିଥିଲା । କିନ୍ତୁ ସେତେବେଳର କେତେକ ନେତା ସ୍ୱାଧୀନତା ପାଇଁ ହିଂସାର ପଥ ଅନୁସରଣ କରୁଥିଲେ । ଏହି ଦୁଇ ବିପରୀତ ଧର୍ମୀ ପରିସ୍ଥିତିରେ

ଲେଖକ କେଉଁ କାରଣରୁ ଭାରତରୁ ବୌଦ୍ଧ ଧର୍ମର ପ୍ରଭାବ ସମ୍ପୂର୍ଣ୍ଣ ହ୍ରାସ ହୋଇଛି, ତାହାର ସମ୍ୟକ ପରିଚୟ ଦେଇଛନ୍ତି । ବୈଦିକ ଯୁଗ ପରେ ପରେ ଯାଗଯଜ୍ଞାଦି ଅନୁଷ୍ଠାନ କରି ସ୍ୱର୍ଗପ୍ରାପ୍ତିର ଆକାଂକ୍ଷାରେ ବହୁ ପଶୁମାନଙ୍କର ବଳି ଦିଆଯାଉଥିଲା । ସେତେବେଳେ ବୁଦ୍ଧଦେବଙ୍କର ଆବିର୍ଭାବ ଓ ଜୀବପ୍ରତି ହିଂସା ପରିହାର ପାଇଁ ଉପଦେଶ ପ୍ରଦାନ କରିଥିଲେ । ଗୋଟିଏ ସମୟରେ ଭାରତର ଅସଂଖ୍ୟ ନରନାରୀ ବୁଦ୍ଧଙ୍କ ବାଣୀରେ ଉଦ୍‌ବୋଧିତ ହେଲେ । କିନ୍ତୁ ହିନ୍ଦୁଧର୍ମର ତଥାକଥିତ ଧର୍ମଧ୍ୱଜା ଧାରୀଗଣ କୌଶଳ କ୍ରମେ ବୌଦ୍ଧଧର୍ମ ବିରୁଦ୍ଧରେ ଲୋକମତ ଜାଗ୍ରତ କରିବାରେ ସକ୍ଷମ ହେଲେ । ଫଳରେ ବୁଦ୍ଧଙ୍କ ଜନ୍ମସ୍ଥାନ ଭାରତବର୍ଷରୁ ତାହାଙ୍କ ଧର୍ମର ମହତ୍ୱ କ୍ରମେ ଲୋପ ପାଇଲା ।

ଯାହାହେଉ ଗାନ୍ଧିଜୀଙ୍କଦ୍ୱାରା ସେହି ଅହିଂସା ନୀତିର ପୁନଃ ପ୍ରଚାର ତଥା ଲୋକଙ୍କ ମଧ୍ୟରେ ତାହାର ଅସୀମ ପ୍ରଭାବକୁ ଲେଖକ ଏକ ଉଜ୍ଜ୍ୱଳ ସମ୍ଭାବନା ବୋଲି ଉଲ୍ଲେଖ କରିଛନ୍ତି ।

ବ୍ରହ୍ମଜାଲ

ଭାରତୀୟମାନଙ୍କର ଧର୍ମବିଶ୍ୱାସକୁ ଭିତ୍ତିକରି ପ୍ରାବନ୍ଧିକ ଏହି ପ୍ରବନ୍ଧଟି ୧୯୪୮ ମସିହା 'ଶଙ୍ଖ' ପତ୍ରିକାର ତୃତୀୟ ଭାଗରେ ପ୍ରକାଶ କରିଥିଲେ । ଏଥିରେ ଲେଖକ ଦର୍ଶାଇଛନ୍ତି ଯେ ହିନ୍ଦୁଧର୍ମରେ ଯେଉଁ ବ୍ରହ୍ମ ଉପାସନା, ପୁନର୍ଜନ୍ମର ପରିକଳ୍ପନା ତଥା ଯାଗଯଜ୍ଞାଦିର ଅନୁଷ୍ଠାନ କରିବା ପାଇଁ ଭିନ୍ନ ଭିନ୍ନ ସମୟରେ ଭିନ୍ନଭିନ୍ନ ମୁନିଋଷି ଧର୍ମଗ୍ରନ୍ଥମାନ ପ୍ରକାଶ କରିଯାଇଛନ୍ତି, ପ୍ରକୃତରେ ତାହା ମଧ୍ୟରେ କେବଳ ଏକମାତ୍ର ଉଦ୍ଦେଶ୍ୟ ଥିଲା ସ୍ୱାର୍ଥରକ୍ଷା । ବହୁ କାଳ୍ପନିକ ବିଷୟକୁ ଜଟିଳ କରି ସାଧାରଣ ଲୋକଙ୍କୁ ବିଭ୍ରାନ୍ତ କରି ବ୍ୟକ୍ତିଗତ ତଥା ଗୋଷ୍ଠୀଗତ ସ୍ୱାର୍ଥ ସଂରକ୍ଷଣ କରାଯାଇଛି । ଏ ସମ୍ପର୍କରେ ଲେଖକ ବ୍ରହ୍ମବାଦର ପ୍ରବର୍ତ୍ତକ ପ୍ରବାହଣଙ୍କ ଗଳ୍ପକୁ ଉଲ୍ଲେଖ କରିଛନ୍ତି । କ୍ଷତ୍ରିୟ ପ୍ରବାହଣ କପଟ ଓ ଜାହିକ ବ୍ରହ୍ମବାଦ ତଥା ପୁନର୍ଜନ୍ମବାଦ ଭଳି ବହୁ ଜଟିଳ ତତ୍ତ୍ୱ ପ୍ରଚାର କରିଥିଲେ ଏବଂ ବିଜ୍ଞ ବ୍ରାହ୍ମଣମାନେ କିପରି ଏହାର ପ୍ରଚାରରେ ସାହାଯ୍ୟ କରିଥିଲେ ତାହା ପ୍ରବାହଣ ଓ ତାଙ୍କ ସ୍ତ୍ରୀ 'ଲୋପା'ଙ୍କ କଥୋପକଥନ ମାଧ୍ୟମରେ ବିବୃତ ହୋଇଛି । ଏହିସବୁ ମତବାଦର ଉଦ୍ଦେଶ୍ୟକୁ ବ୍ୟାଖ୍ୟାକରି ଲେଖକ କହିଛନ୍ତି— "ଅଦୃଶ୍ୟ, ଅଜ୍ଞେୟ, ଅଜ୍ଞାତ ଓ ଧାରଣାତୀତ ହେଲେ ମଧ୍ୟ ଲୋକଙ୍କର ବିଶ୍ୱାସ ଜନ୍ମାଇବା ନିମନ୍ତେ ନାନା ଯୁକ୍ତିତର୍କ ଓ ଉପାୟ ଉଦ୍‌ଭାବନ କରାଗଲା । ସତମିଛ କଥା ପଣ୍ଡିତମାନେ ଜାଣନ୍ତି, ମାତ୍ର ଲୋକେ ବିଶ୍ୱାସର ବଶବର୍ତ୍ତୀ । କ୍ରମେ ସ୍ୱର୍ଗ, ନର୍କ, ପୁନର୍ଜନ୍ମ, ଦେବଯାନ, ପିତୃଯାନ ଇତ୍ୟାଦି ଅତି ଜଟିଳ ପ୍ରଶ୍ନଗୁଡ଼ିକର ଅବତାରଣା କରି ଲୋକସମୂହକୁ ଭ୍ରାନ୍ତ

କରିବାର ଚେଷ୍ଟା କରୁଥିଲେ । ଶିକ୍ଷ ଲୋକଙ୍କର କଳ୍ପନା ଅଜ୍ଞ ଲୋକଙ୍କ ଧନ୍ଦା । କେବଳ ଧନ୍ଦା ନୁହେଁ, ସମସ୍ତେ ତଥାକଥିତ 'ବ୍ରହ୍ମଜାଲ'ରେ ଆବଦ୍ଧ । ଧର୍ମଗୁରୁମାନେ ଓ ଧର୍ମଶାସ୍ତ୍ରର ପ୍ରଣେତାଗଣ ଧର୍ମସମ୍ବନ୍ଧରେ ଯେଉଁ ସବୁ ବିଭ୍ରାନ୍ତିକର ମତାମତ ପ୍ରସ୍ତୁତ କରିଛନ୍ତି, ସେସବୁର ପ୍ରକୃତ ଅର୍ଥ ହୃଦୟଙ୍ଗମ ନକରି ସାଧାରଣ ମଣିଷ ସେସବୁକୁ ଅନୁକରଣ ଓ ଅନୁସରଣ କରିଥାଏ । ତାହାର ବାହାରକୁ ଯିବାର ଶକ୍ତି ଓ ସାମର୍ଥ୍ୟ ତାର ନଥାଏ । କେବଳ ଅତୀତରେ ନୁହେଁ, ସମସାମୟିକ କାଳରେ ସମାଜରେ ନେତୃସ୍ଥାନୀୟ ବ୍ୟକ୍ତିଗଣ ବେଳେବେଳେ ଇଚ୍ଛାକୃତ ଭାବେ ସାଧାରଣ ମଣିଷକୁ ବିଭ୍ରାନ୍ତ କରିଛନ୍ତି ବୋଲି ଲେଖକ କହିଛନ୍ତି । ଏ ସମ୍ପର୍କରେ ଗୋଟିଏ ସାଧାରଣ ସଭାରେ ଗାନ୍ଧିଜୀ ନିଜକୁ ସନାତନୀ ହିନ୍ଦୁ ବୋଲି ଘୋଷଣା କରିଥିବା ଘଟଣାକୁ ସେ ତୀବ୍ର ସମାଲୋଚନା କରିଛନ୍ତି ।

ସ୍ୱାର୍ଥ ଓ ସମ୍ମାନର ପ୍ରାପ୍ତି ଆଶାରେ ସମାଜପତିଗଣ ଇଚ୍ଛାକୃତ ଭାବେ ଧର୍ମସମ୍ବନ୍ଧରେ ଯେଉଁ ଦୁର୍ବୋଧ ଓ ଜଟିଳ ପରିସ୍ଥିତି ସୃଷ୍ଟି କରିଛନ୍ତି, ତାହାକୁ ଲେଖକ 'ବ୍ରହ୍ମଜାଲ' ନାମରେ ଅଭିହିତ କରିଛନ୍ତି ।

ଅଲୋଚିତ ପ୍ରବନ୍ଧଗୁଡ଼ିକ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ 'ଜଳନ୍ଧର ରଚନାବଳୀ' ର ପ୍ରଥମଭାଗରେ ସଂକଳିତ । ଏହିସବୁ ପ୍ରବନ୍ଧ ବ୍ୟତୀତ, ଲେଖକଙ୍କର ବହୁରଚନା ବିକ୍ଷିପ୍ତ ଭାବରେ ପ୍ରକାଶିତ ହୋଇଛି । ସବୁ ରଚନାର ଆଲୋଚନା ଏଠାରେ ସମ୍ଭବ ହେଉ ନଥିବାରୁ କେତେକ ପ୍ରବନ୍ଧର ଟିପ୍ପଣୀମାତ୍ର ପ୍ରଦାନ କରାଯାଇଛି ।

## ବସ୍ତୁ ଓ ଶକ୍ତି ଅବିନାଶୀ

'ଉତ୍କଳ ସାହିତ୍ୟ' ପତ୍ରିକାରେ ୧୩୩୬ ସାଲ ଫାଲଗୁନ ସଂଖ୍ୟାରେ ପ୍ରକାଶିତ । ଏହି ସମଗ୍ର ସୃଷ୍ଟିର ବିନାଶ ଯେ ଅନିବାର୍ଯ୍ୟ, ଏହି ଶାଶ୍ୱତ ସତ୍ୟକୁ ବିଭିନ୍ନ ଉଦାହରଣ ମାଧ୍ୟମରେ ଏଥିରେ ଆଲୋଚନା କରାଯାଇଛି । ଲେଖକଙ୍କ ମତରେ ଯାହାର ଆକାର ଅଛି, ତାହାର ପରିବର୍ତ୍ତନ ଓ ବିନାଶ ଅବଶ୍ୟମ୍ଭାବୀ । ଏହି ଦୃଷ୍ଟିରୁ ପୃଥିବୀ, ସୂର୍ଯ୍ୟ ଓ ଚନ୍ଦ୍ର ଇତ୍ୟାଦି ସମସ୍ତଙ୍କର ଦିନେ ନା ଦିନେ ବିନାଶ ହେବ ।

## ବୈଦିକ ଓ ପୌରାଣିକ ପନ୍‌ଥିଉଡ୍

ଦାର୍ଶନିକ ତଥ୍ୟପୂର୍ଣ୍ଣ ଏହି ପ୍ରବନ୍ଧଟି ୧୯୧୩ ମସିହାରେ ପ୍ରକାଶିତ ହୋଇଥିଲା । ଏଥିରେ ହିନ୍ଦୁଙ୍କର ସୂର୍ଯ୍ୟପୂଜା ନିପାଦ ବିଶେଷାଦ ବିସ୍ତୃତ ଭାବରେ ଆଲୋଚିତ ।

## ଭୂତ ଓ ପ୍ରେତ

୧୯୧୫ ମସିହାରେ ପ୍ରକାଶିତ ଏହି ପ୍ରବନ୍ଧଟି ଗୋଟିଏ ଇଂରାଜୀ ଉପନ୍ୟାସକୁ ଆଧାର କରି ରଚିତ । ଏଥିରେ ଭୌତିକ ଶରୀର, ଜଡ଼ପଦାର୍ଥ ଓ ପ୍ରେତାତ୍ମା ଆଦିର କ୍ରିୟାକଳାପ ଉପରେ ନିଜର ମତାମତ ପ୍ରଦାନ କରିଛନ୍ତି ।

## ଆମ୍ଭମାନଙ୍କର ଯାନ ଓ ଅସ୍ତ୍ରଶସ୍ତ୍ର

ଭାରତୀୟ ପୁରାଣଶାସ୍ତ୍ର ମଧ୍ୟରେ ଉଲ୍ଲିଖିତ ବିଭିନ୍ନ ଅସ୍ତ୍ରଶସ୍ତ୍ର ଓ ଯାନବାହାନ ସମ୍ପର୍କରେ ଆଲୋଚନା କରି ୧୯୧୬ ମସିହାରେ ଏହି ପ୍ରବନ୍ଧ ପ୍ରକାଶ ପାଇଛି ।

## ଜ୍ୟୋତିର୍ବିଦ୍ୟାର ଜୟ

୧୯୩୧ ମସିହାରେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ ଏହି ପ୍ରବନ୍ଧରେ 'ଜ୍ୟୋତିର୍ବିଦ୍ୟା'ର ପରାକାଷ୍ଠା ପ୍ରଦର୍ଶନ କରାଇବାକୁ ଚେଷ୍ଟା କରାଯାଇଛି । ଲେଖକ ମତରେ ଏହା ଯେହେତୁ ପ୍ରତ୍ୟକ୍ଷସିଦ୍ଧ ଏବଂ ଗଣିତ ଏହାର ପୃଷ୍ଠପୋଷକ, ଏହା ପ୍ରକୃତରେ ଗ୍ରହଣଯୋଗ୍ୟ । ଏହି ପ୍ରବନ୍ଧରେ ସକ୍ରେଟିସ୍‌ଙ୍କ ଜୀବନ ବୃତ୍ତାନ୍ତ ମୁଖ୍ୟ ଅଂଶ ଗ୍ରହଣ କରିଛି ।

## ବର୍ଣ୍ଣ ଓ ଜାତି ବିଚାର

ହିନ୍ଦୁ ସମାଜରେ ପ୍ରଚଳିତ ଜାତିପ୍ରଥାର ସମାଲୋଚନା କରି ଲେଖକ ଏହି ପ୍ରବନ୍ଧଟି ୧୯୩୪ରେ ପ୍ରକାଶ କରିଛନ୍ତି, ବିଭିନ୍ନ ପୁରାଣ ଶାସ୍ତ୍ରର ଉଦାହରଣ ଦେଇ ଏହି ଜାତିପ୍ରଥାର ଅଯୌକ୍ତିକତା ଏଥିରେ ଦର୍ଶାଯାଇଛି । ମନୁଙ୍କ ମତ, ବ୍ରାହ୍ମଣମାନଙ୍କ ବିଭାଗ ପ୍ରଭୃତିର ପରିଚୟ ଏଥିରେ ଦିଆଯାଇଛି ।

## କଠିନ ସମସ୍ୟା

୧୯୩୪ ମସିହାରେ ପ୍ରକାଶିତ ଏହି ପ୍ରବନ୍ଧରେ ଭାରତୀୟ ସମାଜରେ ପ୍ରଚଳିତ ଜାତିପ୍ରଥାର କୃତ୍ରିମତା ବିଷୟରେ ପର୍ଯ୍ୟାଲୋଚନା କରାଯାଇଛି । ଏହି ଜାତିପ୍ରଥାର ପରିଣତି ବିଷୟରେ ସୂଚନା ଦେବାକୁ ଯାଇ ସମାଜର ନିମ୍ନବର୍ଗର ଲୋକମାନଙ୍କର ଶିକ୍ଷାଦୀକ୍ଷାରେ ଯେଉଁ ସବୁ ବ୍ୟାଘାତ ସୃଷ୍ଟି ହୋଇଛି, ତାହାର ବିସ୍ତୃତ ଅଲୋଚନା କରାଯାଇଛି । ସାମାଜିକ ଜୀବନର ସାମଗ୍ରିକ ଉନ୍ନତି ପାଇଁ ଏଥିରେ କେତେକ ପରାମର୍ଶ ମଧ୍ୟ ଦିଆଯାଇଛି ।

**ଭାରତ ଇତିହାସ**

କେବଳ ରାଜା ମହାରାଜାଙ୍କ ଯୁଦ୍ଧ ଓ ଜୟପରାଜୟକୁ ବର୍ଣ୍ଣନା କରି ଲିଖିତ ଭାରତର ଇତିହାସ ପ୍ରକୃତରେ ସାମାଜିକ ଜୀବନ ସହିତ ସମ୍ପର୍କରହିତ ବୋଲି ଏହି ପ୍ରବନ୍ଧରେ ଦର୍ଶାଯାଇଛି ।

**ମନ**

ମଣିଷର ମାନସିକ ସ୍ଥିତିକୁ ବିଶ୍ଳେଷଣ କରି ୧୯୩୫ରେ ଲେଖକ ଏହି ପ୍ରବନ୍ଧଟି ପ୍ରକାଶ କରିଛନ୍ତି । ମନ ସହିତ ଅନ୍ୟାନ୍ୟ ଇନ୍ଦ୍ରିୟମାନଙ୍କର ସମ୍ପର୍କକୁ ସୂକ୍ଷ୍ମାତିସୂକ୍ଷ୍ମ ଭାବରେ ଏଥିରେ ବିଶ୍ଳେଷଣ କରାଯାଇଛି । ଏହା ଏକ ମନସ୍ତାତ୍ତ୍ୱିକ ପ୍ରବନ୍ଧ ।

**ମରଣରେ ତୁ ମୋହର ଜୀବନ ସାଥୀ**

ଆତ୍ମାନୁଭୂତିମୂଳକ ଏହି ପ୍ରବନ୍ଧଟି ୧୯୩୫ରେ ପ୍ରକାଶିତ । ବାର୍ଦ୍ଧକ୍ୟ ଉପସ୍ଥିତ ହେଲେ ମଣିଷର ଯେଉଁ ମାନସିକ ପରିବର୍ତ୍ତନ ଆସେ, ନିଜର ବ୍ୟକ୍ତିଗତ ଅଭିଜ୍ଞତାକୁ ଆଧାର କରି ଲେଖକ ଏହି ପ୍ରବନ୍ଧଟି ରଚନା କରିଛନ୍ତି ।

**ଭୂମିକମ୍ପ**

ବସନ୍ତ, ହଇଜା, ପ୍ଲେଗ୍ ଭଳି ସଂକ୍ରାମକ ରୋଗଗୁଡ଼ିକର ପ୍ରାବଲ୍ୟ, ବନ୍ୟା ଓ ଦୁର୍ଭିକ୍ଷ ଭଳି ପ୍ରାକୃତିକ ବିପର୍ଯ୍ୟୟ ସାଙ୍ଗକୁ ଭୂମିକମ୍ପର ପ୍ରକୋପ ଯୋଗୁଁ ଭାରତର ଅର୍ଥନୈତିକ ପ୍ରଗତି ସଦାସର୍ବଦା କିପରି ବାଧାପ୍ରାପ୍ତ ହେଉଥିଲା, ସେସବୁର ପର୍ଯ୍ୟାଲୋଚନା କରି ଲେଖକ ଏହି ପ୍ରବନ୍ଧଟି ୧୯୩୬ ମସିହାରେ ପ୍ରକାଶ କରିଥିଲେ । ସାମ୍ପ୍ରତିକ ସମସ୍ୟାପ୍ରତି ତାଙ୍କର ସଚେତନତା ଏଥିରୁ ପ୍ରମାଣିତ ହୋଇଥାଏ ।

**ଜିଜ୍ଞାସା**

୧୯୩୬ ମସିହାରେ ରଚିତ ଏହି ପ୍ରବନ୍ଧରେ ମଣିଷର ଜାଣିବାର ପ୍ରବୃତ୍ତି ସମ୍ପର୍କରେ ତାତ୍ତ୍ୱିକ ଆଲୋଚନା କରାଯାଇଛି । ଏଇ କାରଣରୁ ମଣିଷ ହେଉଛି ଜୀବଜଗତରେ ଶ୍ରେଷ୍ଠ । ଦେଶ କାଳ ଭେଦରେ ଜିଜ୍ଞାସାର ପରିବର୍ତ୍ତନ, ଭାରତବାସୀଙ୍କ ଜାତୀୟ ପରାଭବ, ହିନ୍ଦୁ ଦର୍ଶନର କର୍ମ ଓ ବ୍ରହ୍ମ ଜିଜ୍ଞାସାର ସ୍ୱରୂପ, କର୍ମର ଧର୍ମମୂଳକ ବିଭାଗ ଇତ୍ୟାଦି ବହୁ ବିଷୟର ଅବତାରଣା ଏଥିରେ କରାହୋଇଛି ।

**କୃଷି**

ଆଦିମ ମାନବର ଖାଦ୍ୟାନ୍ୱେଷଣ ପ୍ରଣାଳୀ, ଏହାର କ୍ରମବିବର୍ତ୍ତିକ ବିକାଶ, କୃଷି କର୍ମର ପ୍ରାରମ୍ଭ ଓ ବିକାଶ ଇତ୍ୟାଦି ବିଷୟ ଏଥିରେ ଆଲୋଚିତ । ଆଧୁନିକ

କାଳରେ ବିଭିନ୍ନ ଯନ୍ତ୍ରପାତି ଓ ସାରର ବ୍ୟବହାର ସହିତ ସଙ୍କରଜାତୀୟ ବୃକ୍ଷର ଉତ୍ପାଦନ ବିଷୟରେ ମଧ୍ୟ ଏଥିରେ ସୂଚନା ଦିଆଯାଇଛି । ଏହା ଲେଖକଙ୍କର ବ୍ୟକ୍ତିଗତ ଅନୁଭୂତିର ସଂଯୋଗରେ ବେଶ୍ ତଥ୍ୟମୂଳକ ହୋଇପାରିଛି । ୧୯୬୭ ମସିହାରେ ଏହା ପ୍ରକାଶିତ ।

**ନକ୍ଷତ୍ର**

ପୃଥିବୀ ଓ ସୂର୍ଯ୍ୟଙ୍କ ମଧ୍ୟରେ ଥିବା ସମ୍ପର୍କକୁ ଭିତ୍ତିକରି ଏହି ପ୍ରବନ୍ଧଟି ରଚିତ । ବିଭିନ୍ନ ନୂତନ ନକ୍ଷତ୍ରମାନଙ୍କର ଆବିଷ୍କାର ଫଳରେ ସୌରଜଗତ ସମ୍ବନ୍ଧରେ ଯେଉଁସବୁ ନୂତନ ଜ୍ଞାନଲାଭ ହୋଇଛି, ତାହାର କେତେକ ସୂଚନା ଏଥିରେ ସନ୍ନିବେଶିତ ।

ଏହିସବୁ ତଥ୍ୟମୂଳକ ପ୍ରବନ୍ଧ ବ୍ୟତୀତ ଜଳନ୍ଧର ଦେବ ବ୍ୟକ୍ତିଗତ ଅନୁଭୂତିକୁ କେନ୍ଦ୍ରକରି କେତେକ ଲଘୁପ୍ରବନ୍ଧ ମଧ୍ୟ ରଚନା କରିଛନ୍ତି । ସେସବୁ ରଚନା ନିମନ୍ତେ କୌଣସି ବିଧିବଦ୍ଧ ଯୋଜନା ନଥିଲେ ମଧ୍ୟ, ତାଙ୍କର ଦୈନନ୍ଦିନ ଜୀବନର କେତେକ ଘଟଣାକୁ ଆଧାରକରି ଏହିସବୁ ରଚନା ସମ୍ଭବ ହୋଇଛି । ସେଥିମଧ୍ୟରୁ 'ସ୍ୱଗତ' ଓ 'ବାସ୍ନା' ଉଲ୍ଲେଖଯୋଗ୍ୟ । ଏଇ ଦୁଇଟି ଲଘୁପ୍ରବନ୍ଧର ଆଲୋଚନା ସଂକ୍ଷେପରେ ପ୍ରଦାନ କରାଯାଉଛି ।

**ସ୍ୱଗତ**

ଏହା ଏକ ଲଘୁପ୍ରବନ୍ଧ । ୧୩୨୪ ସାଲ କାର୍ତ୍ତିକ ସଂଖ୍ୟା 'ଉତ୍କଳ ସାହିତ୍ୟ' ପତ୍ରିକାରେ ଏହା ପ୍ରକାଶିତ । କର୍ମଶୂନ୍ୟ ଅବସରରେ ମନୀଷୀ ମନ ଭିତରେ ବିଭିନ୍ନ ଭାବନା ସୃଷ୍ଟି ହୁଏ । ସେହି ସବୁ ବିକ୍ଷିପ୍ତ ଚିନ୍ତାକୁ ସାହିତ୍ୟରେ ରୂପ ଦେବା ସମ୍ଭବ ନୁହେଁ । କିନ୍ତୁ ପ୍ରାବନ୍ଧିକ ତାଙ୍କ ଜୀବନରେ ଏହିଭଳି କେତେକ କର୍ମଶୂନ୍ୟ ମୁହୂର୍ତ୍ତର ବିକ୍ଷିପ୍ତ ଚିନ୍ତାକୁ ସାହିତ୍ୟିକ ରୂପ ଦେବାପାଇଁ ପ୍ରୟାସ କରିଛନ୍ତି । ହୁଏତ ଏଗୁଡ଼ିକ ପାଠକମାନଙ୍କୁ ବିଶେଷ ସୁଖକର ହୋଇନପାରେ, ସେଥିପାଇଁ ପ୍ରାରମ୍ଭରୁ ସେ ଏ ବିଷୟରେ ସଫେଇ ଦେଇଛନ୍ତି । 'ସ୍ୱଗତ' ଶବ୍ଦର ତାତ୍ପର୍ଯ୍ୟ ବୁଝାଇବାକୁ ଯାଇ ସେ କହିଛନ୍ତି—"ଲେଖକର ଆପେ ଆପେ କଥା ହେବାର ଖୁବ୍ ଅଭ୍ୟାସ ଅଛି । ନିଷ୍କର୍ମା ହୋଇ ବସିଥିବାବେଳେ ସମ୍ମୁଖରେ ଯାହା ପଡ଼ିଥିବ, ତାହା ଓଲଟପାଲଟ କରିଦେଖିବାର ଏବଂ ତତ୍ସମ୍ବନ୍ଧରେ ମନେମନେ ମନ୍ତବ୍ୟ ଦେବାର ଅଭ୍ୟାସ ମଧ୍ୟ ଅଛି ।" ଏହି ମନେମନେ ସେ ଦୁଇଟି ବିଷୟରେ ଏଠାରେ ମନ୍ତବ୍ୟ ଦେଇଛନ୍ତି । ଗୋଟିଏ ହେଲା ସମସାମୟିକ ସମାଜରେ ଓଡ଼ିଆ ଜାତିପ୍ରତି ତାଚ୍ଛଲ୍ୟଭାବ ଏବଂ ଅନ୍ୟଟି ହେଉଛି ସ୍ୱର୍ଗତ ରାଜା ସାର୍ ବାସୁଦେବ ସୁବଳଦେବଙ୍କ ମହାନୁଭବତା ।

ହଠାତ୍ ଲେଖକ ନିଜ ଟେବୁଲତଳେ ଗୋଟିଏ ଖବରକାଗଜର ଅଂଶବିଶେଷ ଦେଖିଲେ ଯେ ସେଥିରେ ଲେଖାଅଛି— Mr. Woodrow Wilson is

Uriya by caste । ଯୁକ୍ତରାଷ୍ଟ୍ର ଆମେରିକାର ପ୍ରେସିଡେଣ୍ଟ୍ ଉଡ୍‌ରୋ ଉଇଲ୍‌ସନ୍ ଜାତିରେ ଓଡ଼ିଆ— ଏହା କେଉଁ ପରିପ୍ରେକ୍ଷିରେ ପ୍ରକାଶ ପାଇଛୁ, ସେ ବିଷୟରେ ଲେଖକଙ୍କ ମନରେ ବିଭିନ୍ନପ୍ରକାର ଭାବନା ଆସିଛୁ । ଶେଷରେ ସେ କହୁଛନ୍ତି ଯେ ଓଡ଼ିଆ ଜାତିର କୌଣସି ଦୋଷ ଦୁର୍ବଳତାକୁ ଭାଷ୍ଟଲ୍ଲ କରିବାପାଇଁ ଯଦି ଏହି କଥାଟି ପ୍ରକାଶ ପାଇଥାଏ, ଆମ ସମସ୍ତ ଓଡ଼ିଆଙ୍କର ଦାୟିତ୍ୱ ହେଉଛି ଯେ ଆମ ଜାତୀୟଜୀବନରୁ ସେହି ଦୋଷ ଦୁର୍ବଳତାକୁ ସମୂଳେ ଦୂର କରିବା । ଯାହାଫଳରେ ଏଭଳି ବିଦ୍ରୂପାତ୍ମକ ମନ୍ତବ୍ୟ ବାହାରେ ପ୍ରକାଶିତ ହେବନାହିଁ ।

ଗତ ଶତକର ଦ୍ୱିତୀୟ ଭାଗରେ କଣିକା ନିର୍ଭୀକ ଭାବରେ ସାର୍ ପୁଡ଼ଲଦେବ ବାମଣ୍ଡାରେ ମହିଷବଳି ପ୍ରଥା ବନ୍ଦ କରିଥିଲେ, ତାର ସୂଚନା ଏଥିରେ ଦିଆଯାଇଛୁ । ଦଶହରା ଦୁର୍ଗାପୂଜାରେ ମହିଷ, ଛାଗ, କୁକ୍କୁଟ ଇତ୍ୟାଦି ସଂଖ୍ୟାଧିକ ଭାବରେ ଦେବୀଙ୍କ ନିକଟରେ ବଳି ପ୍ରଦାନ କରାଯାଏ । ଏ ପରମ୍ପରା ପ୍ରାୟ ସବୁ ଅଞ୍ଚଳରେ ପ୍ରଚଳିତ । କିନ୍ତୁ ଦେଶୀୟ ରାଜ୍ୟଗୁଡ଼ିକରେ ଏହା ଅଧିକ ମାତ୍ରାରେ ଅନୁଷ୍ଠିତ ହୁଏ । ମଣିଷ ନିଜର ବ୍ୟକ୍ତିଗତ କାମନାର ପରିପୂର୍ତ୍ତିତା ପାଇଁ ଏକାଧିକ ଜୀବହତ୍ୟା କରିବାଭଳି ଜଘନ୍ୟ କର୍ମ ବିଷୟରେ କେବେ ବି ଚିନ୍ତା କରିନଥାଏ । ଦିନେ ଲେଖକ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ବୈଠକଖାନାରେ ବସିଛନ୍ତି । ଏହି ଅବସରରେ ହଠାତ୍ ସାର୍ ପୁଡ଼ଲଦେବ ଆସି ପହଞ୍ଚିଲେ ଏବଂ କହିଲେ ଯେ ଯେଉଁ ମହିଷ ଗୋଟିଏ ପରିବାରର ଭରଣପୋଷଣ ଭାର ସମ୍ଭାଳିପାରେ, ସେହି ମହିଷ ସବୁକୁ ବଳିଦେବା ଯୁକ୍ତିଯୁକ୍ତ ନୁହେଁ । ତେଣୁ ତାଙ୍କ ରାଜ୍ୟରେ ମହିଷବଳି ବନ୍ଦପାଇଁ ସେ ନିର୍ଦ୍ଦେଶ ଦେଇଛନ୍ତି ।

ପୁଡ଼ଲଦେବଙ୍କର ଏହି ମହାନୁଭବତା ତଥା ନିର୍ଭୀକତା ସେଦିନ ଲେଖକଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଛି । କାରଣ ବଳିପ୍ରଥା ବନ୍ଦ ବିରୁଦ୍ଧରେ ପ୍ରବଳ ପ୍ରତିବାଦ ହେବ, ଏକଥା ଜାଣି ମଧ୍ୟ ପୁଡ଼ଲଦେବ ସାହସର ସହକାରେ କିପରି ନିଜର ସଠିକ ନିଷ୍ପତ୍ତିକୁ ଘୋଷଣା କଲେ । ତାହା ତାଙ୍କ ବ୍ୟକ୍ତିତ୍ୱର ମହନୀୟତା । ଲେଖକ ଶେଷରେ ଅନ୍ୟାନ୍ୟ ରାଜ୍ୟରେ ଏହି ଆଦର୍ଶ ଅନୁସୃତ ହେଲେ ପ୍ରଭୁତ ସାମାଜିକ ସଂସ୍କାର ସାଧିତ ହେବ ବୋଲି ଆଶା ପ୍ରକାଶ କରିଛନ୍ତି ।

**ବାସ୍ନା**

ଏହା ମଧ୍ୟ ଗୋଟିଏ ଲଘୁପ୍ରବନ୍ଧ । ୧୯୩୩ ସାଲ ଚୈତ୍ର ସଂଖ୍ୟା "ଉତ୍କଳ ସାହିତ୍ୟ" ପତ୍ରିକାରେ ଏହା ପ୍ରକାଶିତ । ଏହା ଜୀବନଧର୍ମୀ ଓ ସତ୍ୟ ଘଟଣା ଉପରେ ଆଧାରିତ । ସମସ୍ତ ସମାଜ ଯାହାକୁ ବାସ୍ନା ବୁଝେ, ସେହି ଅବହେଳିତ ଅବଜ୍ଞା ଜର୍ଜ୍ଜରିତ "ବାସ୍ନା" ମୁଖରେ କିପରି ବହୁ ଗୂଢ଼ତତ୍ତ୍ୱର ସହଜ ପରିପ୍ରକାଶ ସମ୍ଭବ, ତାହା ଏଥିରେ ଦର୍ଶାଯାଇଛୁ ।

ନାଁ ତା'ର ଭୁବନ ମହାକୁଳ ଓରଫ୍ ଭୁବନ ଦର୍ଜି । ପିଲାଟିଦିନରୁ ରାଜା ପୁରୁଲଦେବଙ୍କ ସେବକ ରୂପେ ନିଯୁକ୍ତ । ପୁରୁଲଦେବଙ୍କ ବାଲ୍ୟାବସ୍ଥାରେ ତାଙ୍କ ନିକଟରେ ବସି ବସି ବହୁ ସଂସ୍କୃତ ଶ୍ଳୋକ, ବ୍ୟାକରଣ ସୂତ୍ରାଦି ମୁଖସ୍ଥ କରିଥିଲା । ଦୀର୍ଘଦିନ ପରେ ସେ ଦେବଗଡ଼ ସହରରେ 'ବାସ୍ୱା' ନାମରେ ପରିଚିତ ହେଲା । ପରିଧାନରେ କୌପୁନି ଖଣ୍ଡେ, ବୃତ୍ତି ଭିକ୍ଷା, ଅଫିମ, ଗଞ୍ଜେଇ, ପିକା ଆଦି ମାଦକଦ୍ରବ୍ୟର ସେବକ । ଖରା ବର୍ଷା ଶୀତ କିଛି ବି ତାକୁ ତାହାର ଭିକ୍ଷାବୃତ୍ତିରୁ ବିରତ କରିନଥାଏ । ତା' ସହିତ ଲେଖକଙ୍କର ବ୍ୟକ୍ତିଗତଭାବେ ଘନିଷ୍ଠ ସମ୍ପର୍କ । ସବୁଦିନ ସେ ଆସି ତାଙ୍କ ନିକଟରେ ବସେ । କଥାଛଳରେ ଏପରି ତାତ୍ତ୍ୱିକ ପ୍ରଶ୍ନର ସହଜ ସମାଧାନ କରିଦିଏ ଯେ ଲେଖକ ତାର ଏହି ଗଭୀର ଅନ୍ତର୍ଦୃଷ୍ଟିର ପ୍ରଶଂସା କରିଛନ୍ତି ।

ତା'ର ପାଗଳ ହେବାର ଏକ ନିର୍ଦ୍ଦିଷ୍ଟ ଇତିହାସ ଅଛି । ବ୍ରାହ୍ମଣୀ ନଦୀର ବନ୍ଧୁର ଶଯ୍ୟା ପାରହୋଇ ଗଣ୍ଡିକାଠ ନେବାର ଅସୁବିଧାକୁ ଦୂର କରିବାପାଇଁ ରାଜା ପୁରୁଲଦେବ ପଥରଘାଟି ଭଙ୍ଗାଇ ବାଟ ସଫା କରିବାର ସୁବିଧା କରାନ୍ତି । ଏହି କାମର ତଦାରଖ ନିମନ୍ତେ ଭୁବନ ମହାକୁଳ ଗୋଟିଏ ସ୍ଥାନରେ ନିଯୁକ୍ତ ପାଏ । କଠିନ ପରିଶ୍ରମ ଓ ଅତ୍ୟଧିକ ଭୋଜନ ତା'ର ଅଭ୍ୟାସ । କ୍ରମେ ତା'ର ମସ୍ତିଷ୍କ ବିକୃତ ଆରମ୍ଭ ହୁଏ । ସେଠାରୁ ତାକୁ ଜେଲକୁ ଅଣାଯାଇ ନାନାପ୍ରକାର ଚିକିତ୍ସା କରାଯାଏ । କିନ୍ତୁ ତା'ର ପାଗଳାମି ବନ୍ଦ ହୁଏନା । ଶେଷରେ ସେ ଜେଲରୁ ମୁକ୍ତ ପାଇ ରାସ୍ତା ରାସ୍ତା ବୁଲି ଭିକ୍ଷା ମାଗେ ।

ସେହି ବାସ୍ୱା ଭୁବନ ଦର୍ଜି ସହିତ ତିନୋଟି ପର୍ଯ୍ୟାୟର ଘଟଣାକୁ ନେଇ ଏହି ଲଘୁପ୍ରବନ୍ଧଟି ରଚିତ । ପ୍ରଥମ ଘଟଣା ଘଟିଛି ପଣାସଂକ୍ରାନ୍ତି ଦିନ । ଗ୍ରୀଷ୍ମର ଗ୍ରୀଷ୍ମ ତାପକୁ ଖାତିରି ନକରି ଗୀତ ଗାଇ ଗାଇ ସେ ଆସି ପହଞ୍ଚିଛି ଲେଖକଙ୍କ ନିକଟରେ । ଯେଉଁ ଗୀତଟି ଗାଉଥିଲା, ତାହା ଶିବଙ୍କର ପ୍ରଶଂସାମୂଳକ ଗୀତ ଓ ଶିବଙ୍କର ଭକ୍ତମାନଙ୍କ ମାଦକଦ୍ରବ୍ୟ ସେବନର ବର୍ଣ୍ଣନା ସେଥିରେ ଥିଲା । ଲେଖକ ଏହା ଶୁଣି ସେ ନିଜେ ଶିବଭକ୍ତ ହୋଇ ମାଦକଦ୍ରବ୍ୟ ସେବନ କଲେ ଭଲ ହେବ କି ନୁହେଁ ବୋଲି ଭୁବନକୁ ପଚାରିଛନ୍ତି । ପ୍ରଥମେ ଭୁବନ ଖୁସିହୋଇ ସମ୍ମତି ଜଣାଇଛି ଏବଂ କହିଛି ଯାହାହେଉ, ତା' ନିଜର ମଧ୍ୟ କିଛି ଉପକାର ହେବ । ପରମୁହୂର୍ତ୍ତରେ ସେ ଲେଖକଙ୍କୁ ବାରଣ କରିଛି ଏବଂ ମାଦକଦ୍ରବ୍ୟ ସେବନର ଅପକାରିତା ବିଷୟରେ ସୁନ୍ଦରଭାବେ ବୁଝାଇଛି । ତା'ର ଦୂରଦୃଷ୍ଟି ଓ ତୀକ୍ଷ୍ଣ ବୁଦ୍ଧିରେ ଲେଖକ ଆଶ୍ଚର୍ଯ୍ୟ ହୋଇ କହିଛନ୍ତି ଯେ ଏଇ ପାଗଳଭଳି ଯଦି ତଥାକଥିତ ଭଲ ମଣିଷମାନେ ମାଦକଦ୍ରବ୍ୟର ଅପକାରିତା ବିଷୟରେ ସଚେତନ ହୁଅନ୍ତେ, ତେବେ ସାମାଜିକ ଜୀବନରେ ପରିବର୍ତ୍ତନ ଆସିପାରନ୍ତା ।

ଦ୍ୱିତୀୟ ଘଟଣାଟି ଘଟିଛି ରଥଯାତ୍ରା ସମୟରେ । ଦେବଗଡ଼ ସହରରେ ଗୁଣ୍ଡିଚ୍ଚ ଯାତ୍ରା । ଠାକୁର ମାଉସୀ ମନ୍ଦିରରେ ଅଛନ୍ତି । ଭୋଗ ପାଇଁ ବିଭିନ୍ନ ପ୍ରକାରର ସରଞ୍ଜାମ ଯୋଗାଡ଼ ହୋଇ ରଖାହୋଇଛି ବାରଣ୍ଡା ଉପରେ । ହଠାତ୍ ବାସ୍ନା ଭୁବନ ଦର୍ଜିର ସେଠାରେ ଆବିର୍ଭାବ । ଲେଖକଙ୍କ ନିକଟରେ ବସି ଏସବୁ ଭୋଗ ପଦାର୍ଥକୁ ଦେଖି ଦେଖି ପଚାରିଦେଲା— "କୁହତ ସବୁଠାରୁ ମୂକ କିଏ ?" ବାସ୍ନାର ଏହି ଆକସ୍ମିକ ପ୍ରଶ୍ନ ଲେଖକଙ୍କୁ ବିଚଳିତ କରିଛି । ସେ ଚିନ୍ତାକରି ସଠିକ ଉତ୍ତର ସ୍ଥିର କରି ପାରିନାହାନ୍ତି । ଶେଷରେ ବାସ୍ନାକୁ ତାଙ୍କ ଅକ୍ଷମତା ପ୍ରକାଶ କରିବାରୁ ସେ ଉତ୍ତର ଦେଇଛି 'ଜଗନ୍ନାଥ' । ଏଥିପାଇଁ ସେ ଯେଉଁ ସବୁ ଯୁକ୍ତି ଉପସ୍ଥାପନ କରିଛି ତାହା ଲେଖକଙ୍କୁ ଆଶ୍ଚର୍ଯାନ୍ୱିତ କରିଛି । ସେ କହିଲା ଯେ ଜଗନ୍ନାଥଙ୍କର କାନ ନଥିଲେ ମଧ୍ୟ ତାଙ୍କ ଆଗରେ ଭଜନ କୀର୍ତ୍ତନ କରାଯାଏ ଏଇ ବିଶ୍ୱାସରେ ଯେ ସେ ସବୁ ଶୁଣନ୍ତି । ପ୍ରକୃତରେ କୌଣସି ଭୋଗରାଗ ସେ ଖାଇ ନଥିଲେ ମଧ୍ୟ ବହୁପ୍ରକାରର ଭୋଗ ତାଙ୍କପାଇଁ ଅର୍ପଣ କରାଯାଇଥାଏ ଏଇ ବିଶ୍ୱାସରେ ଯେ ସେ ସବୁ ଖାଆନ୍ତି । କିନ୍ତୁ କେହିକେବେ ଜଗନ୍ନାଥ କଥାକହିବାର ଶୁଣିନାହାନ୍ତି । ତାର ଶେଷ ଯୁକ୍ତି ହେଲା ହୁଏତ ଜଗନ୍ନାଥ ସବୁଠାରୁ ମୂକ କିମ୍ବା ଆମେ ସମସ୍ତେ ମହାମୂର୍ଖ । କାରଣ ଆମେ ଅବାସ୍ତବ ବୋଲି ଜାଣି ମଧ୍ୟ ଜଡ଼ ପ୍ରତିମା ଆଗରେ ଭଜନ ଗାଉଁ ଓ ଭୋଗରାଗ ଅର୍ପଣ କରୁଁ ।

ପ୍ରତିମା ପୂଜାର ଏଇ ନିରର୍ଥକତାକୁ ତଥାକଥିତ ପାଗଳ ଭୁବନ କେତେ ସୁନ୍ଦର ଭାବେ ଉପସ୍ଥାପନ କରିପାରିଛି, ତାହା ଲେଖକଙ୍କୁ ସ୍ତମ୍ଭୀଭୂତ କରିଛି ।

ତୃତୀୟ ଘଟଣାଟି ସମସାମୟିକ ପ୍ରଚଳିତ ଥିବା ବାଲ୍ୟବିବାହ ସମ୍ପର୍କରେ । ଦିନେ ଲେଖକଙ୍କ ନିକଟରେ ଭୁବନ ବାସ୍ନା ବସିଛି । ଏହିସମୟରେ ପାଖସାହିରୁ ବାଦ୍ୟ ଶବ୍ଦ ଶୁଣା ଯାଇଛି । ଲେଖକ ବାସ୍ନାକୁ ପ୍ରଶ୍ନ କରିବାରୁ ସେ କହିଛି ଯେ କଣ୍ଢେଇ ବିବାହ ହେଉଛି । କିନ୍ତୁ ପ୍ରକୃତରେ ଦୁଇଟି ଶିଶୁଙ୍କର ବିବାହ ସମ୍ପନ୍ନ ହେଉଥିଲା । ତାହାକୁ ଜାଣି ମଧ୍ୟ ପରିହାସରେ ଭୁବନ କଣ୍ଢେଇ ବିବାହ ବୋଲି କହିଛି । କାରଣ ଏଇ ବାଲ୍ୟବିବାହ ଫଳରେ ସମାଜରେ ବହୁ ଅନାବଶ୍ୟକ ଅବସ୍ଥାର ସୃଷ୍ଟି ହୋଇଛି । ସେଗୁଡ଼ିକର ଆଲୋଚନା କରି ସେ ସମୟରେ ପ୍ରଚଳିତ ସାମାଜିକ କୁସଂସ୍କାର ବିରୁଦ୍ଧରେ ସେ କଟୁ ମନ୍ତବ୍ୟ ପ୍ରଦାନ କରିଛି । ତା' ଭାଷାରେ— "ଯେଉଁ ଜାତି ଏକ ଦୋଷ ନିମନ୍ତେ ସ୍ତ୍ରୀ ପ୍ରତି ଏକ ଦଣ୍ଡ ଦିଏ, ପୁରୁଷ ପ୍ରତି ଏକ ଦଣ୍ଡ ଦିଏ, ସେ ପୁଣି କି ଜାତି ? ସେ ପୁଣି କି ସମାଜ ? ପୁରୁଷ ବୋଲି ଜାତିରେ ମିଶିବ, ସ୍ତ୍ରୀ ବୋଲି ପତିତା ହୋଇ ରହିବ ?"

ଭୁବନବାବୁର ଏହିସବୁ ସମାଜ ସମ୍ପର୍କୀୟ ମତ ଓ ମନ୍ତବ୍ୟଦ୍ୱାରା ଲେଖକ ବିଶେଷଭାବେ ପ୍ରଭାବିତ ହୋଇଛନ୍ତି । ତେଣୁ ଶେଷରେ ସେ ନିଜେ କହିଛନ୍ତି ପ୍ରକୃତରେ ଭୁବନ ମହାକୁଳ ବାସୀ ନୁହେଁ, ବାସୀ ହେଉଛନ୍ତି ସମାଜରେ ଚଳପ୍ରଚଳ କରୁଥିବା ଅସଂଖ୍ୟ ତଥାକଥିତ ସୁସ୍ଥ ମଣିଷ । କାରଣ ସେମାନେ ବିବେକଶୂନ୍ୟ ଭାବରେ ବହୁ ଅନ୍ଧବିଶ୍ୱାସ ଓ କୁସଂସ୍କାରଦ୍ୱାରା ପରିଚାଳିତ ।

ପ୍ରବନ୍ଧଟିର ରଚନାଶୈଳୀ ଅତି ଚମତ୍କାର । ସମାଜର ଏକ ଅବହେଳିତ ଉପେକ୍ଷିତ ଚରିତ୍ରକୁ କିପରି ଗଭୀର ଭାବରେ ଅଧ୍ୟୟନ କରାଯାଇ ପାରେ, ତାହାର ପ୍ରକୃଷ୍ଟ ଉଦାହରଣ ଏଥିରେ ପ୍ରତିଫଳିତ ।

## ସ୍ୱାଧୀନଚିନ୍ତା

ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ବିଷୟକୁ ବିଭିନ୍ନ ଦୃଷ୍ଟିକୋଣରୁ ପର୍ଯ୍ୟାଲୋଚନା କରି କିପରି ପରମ୍ପରାକ୍ରମେ ମଣିଷର ସ୍ୱାଧୀନ ଚିନ୍ତାକୁ ବ୍ୟାହତ କରାଯାଇଛି, ତାହାର ଆଲୋଚନା ପାଇଁ ଲେଖକ ଧାରାବାହିକ ଭାବରେ 'ଉତ୍କଳ ସାହିତ୍ୟ' ର ବିଭିନ୍ନ ସଂଖ୍ୟାରେ ଏହି ଶିରୋନାମାରେ କେତେକ ଲଘୁ ପ୍ରବନ୍ଧ ପ୍ରକାଶ କରିଛନ୍ତି । ସେଥିରୁ ଆଲୋଚନା ଯେପରି ଜ୍ଞାନଗର୍ଭକ, ସେହିପରି କୌତୂହଳପ୍ରଦ । ବିଭିନ୍ନ ଉଦାହରଣ ମାଧ୍ୟମରେ ସେହି ନିର୍ଦ୍ଦିଷ୍ଟ ବିଷୟର ବହୁବିଧ ଆଲୋଚନା ଲେଖାଗୁଡ଼ିକୁ ହୃଦ୍ୟ କରିପାରିଛି । ୧୯୩୮ ସାଲ ଚୈତ୍ର ସଂଖ୍ୟାରେ ପ୍ରକାଶିତ ଆଲୋଚନାର ବିଷୟ ହେଉଛି **'Fear God'**— ଈଶ୍ୱରଙ୍କୁ ଭୟ କର । କେବଳ ଭାରତରେ ନୁହେଁ, ବିଶ୍ୱର ସବୁ ସମାଜରେ ମଣିଷକୁ ମୂଳରୁ ଈଶ୍ୱରଙ୍କ ପ୍ରତି ଭୟର ମନୋଭାବ ପ୍ରଦର୍ଶନ କରାଇବାପାଇଁ ବହୁପ୍ରକାରର ଉଦ୍ୟମ ହୋଇଥାଏ । କିନ୍ତୁ ଲେଖକ ଏହାକୁ ଏକ ନିରର୍ଥକ ଉଦ୍ୟମ ଭାବରେ ପ୍ରମାଣିତ କରିଛନ୍ତି । ତାଙ୍କ ମତରେ ଅଜ୍ଞାତ ଓ ଅନାଗତକୁ ମଣିଷ ଭୟକରେ । କିନ୍ତୁ ଈଶ୍ୱରଙ୍କୁ ଭୟ କରିବାର କୌଣସି କାରଣ ନାହିଁ । ଯେଉଁମାନେ କୁହନ୍ତି ଭୟରୁ ଭକ୍ତି ଜାତ ହୁଏ, ତାହା ମଧ୍ୟ ଲେଖକଙ୍କ ମତରେ ଯଥାର୍ଥ ନୁହେଁ । ସେ କହିଛନ୍ତି —"ଯେଉଁମାନେ ଈଶ୍ୱରଙ୍କୁ ଭୟକଲେ, ଏହି ଉପଦେଶ ରଚନା କଲେ, ତାଙ୍କ ବିବେଚନାରେ ଭକ୍ତି ଓ ଭୟ ମଧ୍ୟରେ ଅଧିକ ପାର୍ଥକ୍ୟ ନଥିଲା । ମାତ୍ର ଏହା ସତ୍ୟ କି ? ଭୟରୁ ଭକ୍ତି ଏକ ନିତାନ୍ତ କୃତ୍ରିମ । ଭୟରୁ ଭକ୍ତି ଶତ୍ରୁ ପ୍ରତି, ଅତ୍ୟାଚାରୀ ପ୍ରତି । ଭୟର କାରଣ ଯିବା ସଙ୍ଗେସଙ୍ଗେ ଭକ୍ତି ଉଡ଼ିଯାଏ । ଯାହାକୁ ଭୟ କରାଯାଏ, ତାକୁ ଭକ୍ତି କରିବା ଅସମ୍ଭବ । ତେବେ ମନୁଷ୍ୟ ଈଶ୍ୱରଙ୍କଠାରେ ଭୟ ଓ ଭକ୍ତି କରିବ କିପରି ? କଠିନ ଓ କୋମଳର ସମାବେଶ ଏକତ୍ର ଅସମ୍ଭବ ।"

ଲେଖକଙ୍କ ମତରେ ଈଶ୍ୱରଙ୍କ ପ୍ରତି ଭୟଭୀତ ହେବାକୁ ଉପଦେଶ ଦେବା ମୂଳରେ ସ୍ୱାର୍ଥପରତା ରହିଛି ।

୧୯୩୩ ସାଲ ଶ୍ରାବଣ ସଂଖ୍ୟାରେ ପ୍ରକାଶିତ 'ସ୍ୱାଧୀନ ଚିନ୍ତା'ର ଆଲୋଚନାର ବିଷୟ 'ଧର୍ମ' । 'ଧର୍ମ'ର ପ୍ରକୃତ ଅର୍ଥ କାଳକ୍ରମେ ସ୍ୱାର୍ଥକେନ୍ଦ୍ରିକ ପ୍ରଚାରକମାନଙ୍କଦ୍ୱାରା କିପରି ପରିବର୍ତ୍ତିତ ହୋଇ ମୂଳ ଉଦ୍ଦେଶ୍ୟର ବିରୁଦ୍ଧାଚରଣ କରୁଛି, ବହୁ ଉଦାହରଣ ଓ ଶାସ୍ତ୍ରର ଉଦ୍ଧୃତି ସହ ଲେଖକ ପର୍ଯ୍ୟାଲୋଚନା କରିଛନ୍ତି । ବିଶ୍ୱରେ ଅସଂଖ୍ୟ ଧର୍ମମତର ପ୍ରଚଳନ, ପ୍ରତ୍ୟେକ ଧର୍ମର ଧର୍ମାବଲମ୍ବୀଗଣ ନିଜନିଜର ଧର୍ମର ଶ୍ରେଷ୍ଠତ୍ୱ ପ୍ରତିପାଦନ ପାଇଁ ପ୍ରଚେଷ୍ଟା, ଫଳରେ ହିଂସା, ଦ୍ୱେଷ, ନରହତ୍ୟା ଆଦି ବିଭତ୍ସ କାଣ୍ଡର ସୃଷ୍ଟି ଇତ୍ୟାଦି ବର୍ଣ୍ଣନା କରାଯାଇଛି । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନଗଣ ନିଜ ନିଜ ଧର୍ମକୁ ସନାତନ ଶାଶ୍ୱତ ବୋଲି ପ୍ରଚାର କରନ୍ତି । କିନ୍ତୁ ସମୟାନୁକ୍ରମେ ସେହି ସେହି ଧର୍ମର କେତେଯେ ପରିବର୍ତ୍ତନ ହୋଇଛି, କେହି ତା'ର ଖବର ରଖନ୍ତି ନାହିଁ । ଭାରତରେ ଏହି ପରିବର୍ତ୍ତନ ଅଧିକ ତୀବ୍ର । ଏ ପ୍ରସଙ୍ଗରେ ନାଳନ୍ଦାର ମୁଗୁନି ପଥର ନିର୍ମିତ ଅହିଂସାର ପ୍ରଚାରକ ବୌଦ୍ଧ ମୂର୍ତ୍ତି କିପରି ଆଜି 'କାଳଭୈରବ' ରୂପେ ପୂଜିତ ଓ ମେଷାଦି ପଶୁଙ୍କ ରକ୍ତରେ ରଂଜିତ, ତାହା ଉଲ୍ଲେଖ କରିଛନ୍ତି । ଶେଷରେ କହିଛନ୍ତି— "ଧର୍ମ ନାମଟି ଆତ୍ମରକ୍ଷାର ଉପାୟ । ଧର୍ମର ଦୁହାଇ ଦେଇ ମନୁଷ୍ୟ ସଂସାରରେ ଅଶେଷ ପାପ କରୁଛି, ଅସଂଖ୍ୟ ପ୍ରାଣ ନଷ୍ଟକରୁଅଛି, କୁରୁକ୍ଷେତ୍ର ଧର୍ମକ୍ଷେତ୍ର, କୁରୁପାଣ୍ଡବ ଯୁଦ୍ଧ ଧର୍ମଯୁଦ୍ଧ', କୋରାନ୍ ମାନ, ନତୁବା ପ୍ରାଣ ଦିଅ । ଏହା ଧର୍ମବାକ୍ୟ ଓ ଯେହାଦ ଧର୍ମଯୁଦ୍ଧ, ମୋଗଲମାନଙ୍କର ପୈଶାଚିକ କାଣ୍ଡ, ଖ୍ରୀଷ୍ଟାନ ପୁରୋହିତମାନଙ୍କ ଉତ୍ତେଜନାରେ ଅଶେଷ ନରନାରୀଙ୍କର ପ୍ରାଣନାଶ ଈଶ୍ୱରେଚ୍ଛା ଇତ୍ୟାଦି କେତେଗୁଡ଼ିଏ ଧର୍ମମତର ସୃଷ୍ଟି ହୋଇ ନଥିଲେ ଏତେ ରକ୍ତପାତ ହୁଅନ୍ତା କି ?"

ପରିହାସ ଛଳରେ ଲେଖକ ପୁନଶ୍ଚ କହିଛନ୍ତି— "ଈଶ୍ୱର ହିନ୍ଦୁଙ୍କୁ ବିଶୁଦ୍ଧ ଓ ପବିତ୍ର କରି ରଖି ପାରୁନାହାନ୍ତି କିମ୍ବା ସମସ୍ତଙ୍କୁ ମୁସଲମାନ କରିଦେଇ ନାହାନ୍ତି କିମ୍ବା ସମସ୍ତଙ୍କୁ ଖ୍ରୀଷ୍ଟଭକ୍ତ କରୁନାହାନ୍ତି । ଈଶ୍ୱର କାହାକଥା ଶୁଣିବେ ?

ଏହାବ୍ୟତୀତ ତାହାଙ୍କର କେତେକ ପ୍ରବନ୍ଧ ଉପଲବ୍ଧ ନ ହେବାରୁ, ସେସବୁର ଆଲୋଚନା ସମ୍ଭବ ହୋଇନାହିଁ । ତାଙ୍କର ପ୍ରଥମ ପ୍ରବନ୍ଧ 'ଭାରତୀୟ ରମଣୀମାନଙ୍କର ଦୁରବସ୍ଥା' (୧୮୯୫ ସାପ୍ତାହିକ 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶିତ ହୋଇଥିଲା । 'ଗହଣ ବିଚାର ଓ ତାହାର ଇତିବୃତ୍ତ', ସ୍ୱର୍ଗତ ବିଶ୍ୱନାଥଙ୍କ ପ୍ରତି, ଶୁଦ୍ରଜାତି କେଉଁଟା, 'ଅଭିବ୍ୟକ୍ତିବାଦରେ ଆତ୍ମସ' ପ୍ରଭୃତି ପ୍ରବନ୍ଧଗୁଡ଼ିକ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା ।

ଜଳନ୍ଧରଦେବଙ୍କ ଦ୍ୱାରା ଧାରାବାହିକଭାବେ ଏହି ସ୍ୱାଧୀନ ଚିନ୍ତା ସେତେବେଳେ ପାଠକମାନଙ୍କଦ୍ୱାରା ବିଶେଷଭାବେ ପ୍ରଶଂସନୀୟ ହୋଇଥିଲା । ସେଥିପାଇଁ ଏହାର ଅନୁକରଣରେ ଶଶିଭୂଷଣ ରାୟ ତାହାଙ୍କ "ବିକ୍ଷିପ୍ତ ଚିନ୍ତା" ଆରମ୍ଭ କରିଥିଲେ । 'ଉତ୍କଳ ସାହିତ୍ୟ'ର ଅଧିକାଂଶ ସଂଖ୍ୟାରେ ଶଶିଭୂଷଣଙ୍କ 'ବିକ୍ଷିପ୍ତ ଚିନ୍ତା' ପ୍ରକାଶିତ ହୋଇଛି । କିନ୍ତୁ ଜଳନ୍ଧରଙ୍କ 'ସ୍ୱାଧୀନ ଚିନ୍ତା' ମଝିରେ ମଝିରେ କେତୋଟି ସଂଖ୍ୟାରେ ପ୍ରକାଶିତ । ଏହି ସବୁ ଲେଖା ମଧ୍ୟରେ ତାହାଙ୍କର ଅଗାଧପାଣ୍ଡିତ୍ୟର ପରିଚୟ ମିଳେ । କେବଳ ଉତ୍କଳୀୟ କିମ୍ବା ଭାରତୀୟ ପୃଷ୍ଠଭୂମିରେ ନୁହେଁ, ସମଗ୍ର ବିଶ୍ୱର ସାଂପ୍ରତିକ ଘଟଣାବଳୀ, ଇତିହାସ, ଧର୍ମ, ସାହିତ୍ୟ ସମ୍ପର୍କରେ ନିଜର ଯୁକ୍ତିସମ୍ମତ ମତ ଓ ମନ୍ତବ୍ୟକୁ ଏହି ସବୁରେ ସେ ସ୍ଥାନ ଦେଇଛନ୍ତି । ପ୍ରକୃତ ସମାଲୋଚନାଠାରେ ଯେଉଁ ନିର୍ଭିକତା ରହିବା ଆବଶ୍ୟକ, ଏହି ଲେଖାଗୁଡ଼ିକ ମଧ୍ୟରେ ଜଳନ୍ଧରଙ୍କର ସେହି ନିର୍ଭିକ ମନୋଭାବର ସୁସ୍ପଷ୍ଟ ପରିଚୟ ମିଳିଥାଏ । ଭାରତୀୟମାନଙ୍କଠାରେ ଜାତୀୟତା ମନୋଭାବର ଅଭାବ । ଏଠାରେ ଜାତି କହିଲେ ଦେଶକୁ ନ ବୁଝାଇ ବ୍ରାହ୍ମଣ, କ୍ଷତ୍ରିୟ ଇତ୍ୟାଦିକୁ ବୁଝାଇବା, ଶିଳ୍ପପତିମାନଙ୍କର ବିଭିନ୍ନ ମନ୍ଦିର ନିର୍ମାଣ ପଛରେ ଧର୍ମକୁ ଆଖିଠାର ମାରିବା । ଦିଲ୍ଲୀରେ ବିରଳାଙ୍କର ଲକ୍ଷ୍ମୀନାରାୟଣ ମନ୍ଦିର ନିର୍ମାଣ ଓ ତାର ପ୍ରତିଷ୍ଠା ନିମନ୍ତେ ମହାତ୍ମା ଗାନ୍ଧୀଙ୍କର ସ୍ୱୀକୃତିକୁ ସମାଲୋଚନା, କଂଗ୍ରେସରେ ମହାତ୍ମାଗାନ୍ଧିଙ୍କର ଏକଛତ୍ରବାଦ ଇତ୍ୟାଦି ବହୁ ସାମ୍ପ୍ରତିକ ବିଷୟ ତାହାଙ୍କ ସ୍ୱାଧୀନ ଚିନ୍ତାରେ ଉଲ୍ଲିଖିତ । ସବୁଗୁଡ଼ିକର ଆଲୋଚନା ଏଠାରେ ସମ୍ଭବ ନୁହେଁ, କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ ଲେଖକଙ୍କର ଏହି ଉଦ୍ୟମ ସମସାମୟିକ ଶିକ୍ଷିତ ଗୋଷ୍ଠୀଙ୍କ ବୌଦ୍ଧିକ ବିକାଶରେ ସାହାଯ୍ୟ କରିଛି ।



## ଗାଳ୍ପିକ କଳାଧର

ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପର ସୃଷ୍ଟି ସମୟ ସୁଦୀର୍ଘ ନୁହେଁ । ଗୋଟିଏ ଶତାବ୍ଦୀ ପୂର୍ଣ୍ଣ ହୋଇନଥିଲେ ମଧ୍ୟ ଏହାର ଗୁଣାତ୍ମକ ଉତ୍କର୍ଷ ସାହିତ୍ୟର ଅନ୍ୟାନ୍ୟ ବିଭାଗଠାରୁ ଅପେକ୍ଷାକୃତ ଭାବେ ଅଧିକ ବୋଲି ଆଲୋଚକଗଣ ସ୍ୱୀକାର କରନ୍ତି । ଓଡ଼ିଆ ଜନଜୀବନର ବିଭିନ୍ନ ଦିଗକୁ ସ୍ପର୍ଶକରି ଏହାର ମାର୍ମିକ ଅଭିବ୍ୟକ୍ତିରେ ଓଡ଼ିଆ କ୍ଷୁଦ୍ରଗଳ୍ପ ହିଁ ସୀମାହୀନ ସଫଳତା ଅର୍ଜ୍ଜନ କରିପାରିଛି ।

୧୮୯୮ ମସିହାରେ ପ୍ରଥମ ଓଡ଼ିଆ କ୍ଷୁଦ୍ରଗଳ୍ପ 'ରେବତୀ'ର ପ୍ରକାଶନ ପରଠାରୁ ପ୍ରାୟ ୧୯୭୦ ମସିହା ପର୍ଯ୍ୟନ୍ତ ପ୍ରକାଶିତ ଗଳ୍ପଗୁଡ଼ିକରେ କଳାତ୍ମକ ଉତ୍କର୍ଷ ବିଶେଷ ନଥିଲା । ଏହି କଳା ଧର୍ମର ଅଭାବକୁ ଲକ୍ଷ୍ୟକରି ୧୯୦୪ ମସିହାରେ ଚନ୍ଦ୍ରଶେଖର ନନ୍ଦ 'ଉତ୍କଳ ସାହିତ୍ୟ' ପତ୍ରିକାରେ 'ସାହିତ୍ୟରେ କ୍ଷୁଦ୍ରଗଳ୍ପ' ଶୀର୍ଷକ ଆଲୋଚନାରେ ଉଲ୍ଲେଖ କରିଥିଲେ—"ସାହିତ୍ୟରେ ସଂକ୍ଷିପ୍ତତା ଅତି ଆବଶ୍ୟକ, କ୍ଷୁଦ୍ରଗଳ୍ପରେ ତାହା ଅତ୍ୟନ୍ତ ଉପାଦେୟ । ବାଜେ କଥା କହି ସ୍ଥାନ ପୂରଣ କରିବା କ୍ଷୁଦ୍ରଗଳ୍ପରେ ସର୍ବଦା ଦୂଷଣୀୟ । ଗଳ୍ପଟିକୁ ପୁନଃ ପୁନଃ ଆବୃତ୍ତି କରି ପ୍ରୟୋଜନୀୟ ପରିବର୍ତ୍ତନ ଓ ସଂଶୋଧନ କରିବା ବାଞ୍ଛନୀୟ ବୋଲି ବିବେଚିତ ହୋଇଥାଏ । ଅତର୍କିତ ଆରମ୍ଭ ଓ ଆକସ୍ମିକ ପରିସମାପ୍ତି କ୍ଷୁଦ୍ରଗଳ୍ପରେ ସୌନ୍ଦର୍ଯ୍ୟର ମାତ୍ରା ବିଶେଷ ବଢ଼ାଇଥାଏ । ମୂଳରେ ଗଳ୍ପଟି ଏପରି ହେବା ବିଧେୟ ଯେ ପାଠକ ମାତ୍ରକେ ହୃଦୟ ଅପୂର୍ବ ଭାବରସରେ ଆପ୍ଲୁତ ହୋଇଯିବ । ଭାବର ଉଚ୍ଚତା, ଭାଷାର ଲାଳିତ୍ୟ, ରଚନା ନୈପୁଣ୍ୟର ଏକତ୍ର ସମାବେଶ କ୍ଷୁଦ୍ରଗଳ୍ପରେ ରହିବା ଏକାନ୍ତ ଆବଶ୍ୟକ । ଅଧିକ ମଧ୍ୟ ସାଂସାରିକ ବହୁ ବିଷୟର ଅଭିଜ୍ଞତା ଲେଖକର ଥିବା ପ୍ରୟୋଜନ ।" ଅବଶ୍ୟ ଏହି ସମୟକୁ ଓଡ଼ିଆ କ୍ଷୁଦ୍ରଗଳ୍ପର ସଂଖ୍ୟା ଥିଲା ଅତ୍ୟନ୍ତ ନଗଣ୍ୟ । 'ରେବତୀ' ପରେ ଫକୀରମୋହନ ସେପର୍ଯ୍ୟନ୍ତ ଅନ୍ୟ କୌଣସି ଗଳ୍ପ ଲେଖିନଥିଲେ । ୧୯୦୪ ମସିହା ପର୍ଯ୍ୟନ୍ତ ଯେଉଁ ୪।୫ଟି ଗଳ୍ପ ପ୍ରକାଶ ପାଇଥିଲା, ସେଗୁଡ଼ିକର ଶିଳ୍ପକଳା ଆଦୌ ଉନ୍ନତତର ନଥିଲା ବୋଲି ସ୍ପଷ୍ଟଭାବେ କୁହାଯାଇପାରେ ।

ଓଡ଼ିଆ ସାହିତ୍ୟରେ କ୍ଷୁଦ୍ରଗଳ୍ପ ଭଳି ଏକ ବିଶିଷ୍ଟ ବିଭାଗର ଗୁରୁତ୍ୱର ଅଭାବକୁ ହୃଦୟଙ୍ଗମ କରି 'ଉତ୍କଳ ସାହିତ୍ୟ' ପତ୍ରିକାର ସମ୍ପାଦକ ବିଶ୍ୱନାଥ କର ଏ ଦିଗରେ ନିଷ୍ଠାରସହ ପ୍ରୟାସ କରିଥିଲେ । ସମସାମୟିକ କେତେକ ବିଶିଷ୍ଟ ଲେଖକଙ୍କୁ କ୍ଷୁଦ୍ରଗଳ୍ପ ରଚନା ନିମନ୍ତେ ବ୍ୟକ୍ତିଗତଭାବେ ସେ ପତ୍ର ଲେଖୁଥିଲେ ଏବଂ ନୂତନ ଲେଖକଙ୍କ ଗଳ୍ପଗୁଡ଼ିକୁ ପତ୍ରିକାରେ ପ୍ରକାଶକରି ସେମାନଙ୍କୁ ପ୍ରେରଣା ଯୋଗାଉଥିଲେ । ଫଳତଃ ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକଠାରୁ ଅଧିକରୁ ଅଧିକ କ୍ଷୁଦ୍ରଗଳ୍ପ ପ୍ରକାଶିତ ହୋଇଥିଲା । ଶିଳ୍ପଗତ ଦୃଷ୍ଟିରୁ ଏହି ସମୟରେ ପ୍ରକାଶିତ ଗଳ୍ପଗୁଡ଼ିକର ମଧ୍ୟ ବହୁ ଦୋଷ ଦୁର୍ବଳତା ରହିଥିବାର ଦେଖାଯାଏ । ତଥାପି ଓଡ଼ିଆ ଜନମାନସର ଭାବ ଭାବନାକୁ ସାମଗ୍ରିକଭାବେ ଏହା ପ୍ରତିଫଳିତ କରିବାରେ ସମର୍ଥ ହୋଇଥିଲା । ଫକୀର ମୋହନ ସେନାପତି, ଦୟାନିଧି ମିଶ୍ର ଓ ବାଞ୍ଛାନିଧି ପଟ୍ଟନାୟକଙ୍କ ପ୍ରଣୀତ କ୍ଷୁଦ୍ରଗଳ୍ପଗୁଡ଼ିକ ମଧ୍ୟ ସମସାମୟିକ ଓଡ଼ିଆ ସାମାଜିକ ଜୀବନର ବହୁ ଆଶା ନିରାଶା, ସୁଖ ଦୁଃଖ, ସାର୍ଥକତା ବ୍ୟର୍ଥତା, ହସ କାନ୍ଦ ଓ ଭଲ ମନ୍ଦର ଚିତ୍ର ସୁନ୍ଦର ଭାବରେ ଅଙ୍କିତ ହୋଇଛି । ସାମାଜିକ କୁସଂସ୍କାର, ନାରୀ ଶିକ୍ଷାପ୍ରତି ହତାଦର, ପାଶ୍ଚାତ୍ୟ ଜଡ଼ବାଦୀ ସଭ୍ୟତାର ବିକାଶ, ପୂର୍ବ ଓ ପାଶ୍ଚାତ୍ୟର ବିଭିନ୍ନ ଲୀଳା, ସାମାଜିକ ଜୀବନର ବିପର୍ଯ୍ୟୟ, ବାଲ୍ୟବିବାହ, କନ୍ୟାସୁନା ପ୍ରଥା, ବିଧବା ସମସ୍ୟା, ମହାଜନ ଓ ଜମିଦାରମାନଙ୍କର ଶୋଷଣ ତଥା ଓଡ଼ିଆ ଜାତୀୟତାର ଉତ୍ଥାନ ପ୍ରଭୃତି ବହୁ ପ୍ରସଙ୍ଗର ଅବତାରଣା ଏହି ସମୟର ଗଳ୍ପମାନଙ୍କରେ ସମ୍ଭବ ହୋଇଛି ।

୧୯୨୦ ମସିହା ପରେ ଓଡ଼ିଆ କ୍ଷୁଦ୍ରଗଳ୍ପ କ୍ଷେତ୍ରରେ ନୂତନ ଜୀବନ-ଜିଜ୍ଞାସା ଓ ସାମାଜିକ ମୂଲ୍ୟବୋଧକୁ ବିଶେଷ ପ୍ରାଧାନ୍ୟ ଦିଆଯାଇଛି । ସ୍ୱାଧୀନତା ପର୍ଯ୍ୟନ୍ତ ପ୍ରାୟ ୩୦ ବର୍ଷ ମଧ୍ୟରେ ବହୁ କଥାକାରମାନଙ୍କର ଆବିର୍ଭାବ ଘଟିଛି ଏବଂ ଫକୀର ମୋହନଙ୍କ ପ୍ରତିଷ୍ଠିତ ଭିତ୍ତି ଉପରେ ଏକ ସୁଦୃଢ଼ ଗଳ୍ପପରମ୍ପରା ଜନ୍ମ ନେଇଛି । ଆତ୍ମିକ ତଥା ଆଙ୍ଗିକ ଦୃଷ୍ଟିରୁ ଏହି କାଳର ଓଡ଼ିଆ କ୍ଷୁଦ୍ରଗଳ୍ପରେ ବହୁ ପରିବର୍ତ୍ତନ ସଂଘଟିତ ହୋଇଛି । ଓଡ଼ିଶାରେ ଇଂରାଜୀ ଶିକ୍ଷାର ବିସ୍ତାର, ସ୍ୱତନ୍ତ୍ର ଉତ୍କଳପ୍ରଦେଶ ଗଠନ ଆନ୍ଦୋଳନ, ପ୍ରଥମ ବିଶ୍ୱଯୁଦ୍ଧ ଅବସାନ ପରେ ବିପର୍ଯ୍ୟସ୍ତ ସାମାଜିକ ସ୍ଥିତି, ଭାରତୀୟ ସ୍ୱାଧୀନତା ସଂଗ୍ରାମର ତୀବ୍ରତା ଆଦି କାରଣରୁ ସେତେବେଳେ ଓଡ଼ିଆ ସାମାଜିକ ଜୀବନରେ ଯେଉଁ ନୂତନ ଆତ୍ମପ୍ରତ୍ୟୟ ଓ ଆତ୍ମବିଶ୍ୱାସ ସୃଷ୍ଟି ହୋଇଥିଲା, ତାହାର ପ୍ରଭାବରେ ଓଡ଼ିଆ କ୍ଷୁଦ୍ରଗଳ୍ପର ଆଙ୍ଗିକ ତଥା ଆତ୍ମିକରେ ଦ୍ରୁତ ପରିବର୍ତ୍ତନ ହୋଇଥିଲା ।

୧୯୧୫ ମସିହାର 'ଉତ୍କଳ ସାହିତ୍ୟ' ପତ୍ରିକାରେ ଜଳନ୍ଧର ଦେବଙ୍କ ପ୍ରଥମ କ୍ଷୁଦ୍ରଗଳ୍ପ "ଗୋଟିଏ କଥା' ପ୍ରକାଶିତ ହୋଇଛି । ୧୯୨୧ ମସିହା ପର୍ଯ୍ୟନ୍ତ

ସେ ଆଉ କୌଣସି ଗଳ୍ପ ଲେଖିଥିବାର ଜଣାଯାଏ ନାହିଁ । ବୋଧହୁଏ ପାଠକ-ମାନଙ୍କଠାରୁ ଆଶାନୁରୂପ ପ୍ରତିକ୍ରିୟା ପାଇନଥିବାରୁ ସେ ଦୀର୍ଘ ୭ ବର୍ଷ କାଳ ଗଳ୍ପ ଲେଖିନଥିଲେ । କିନ୍ତୁ ୧୯୨୧ ମସିହାରୁ ୧୯୪୦ ମସିହା ପର୍ଯ୍ୟନ୍ତ ଧାରାବାହିକ ଭାବରେ ତାହାଙ୍କର ବିଂଶାଧିକ କ୍ଷୁଦ୍ରଗଳ୍ପ 'ଉତ୍କଳ ସାହିତ୍ୟ', 'ସହକାର' ଓ ଅନ୍ୟାନ୍ୟ ପତ୍ରପତ୍ରିକାରେ ପ୍ରକାଶିତ ହୋଇଛି । ଅବଶ୍ୟ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ଗଳ୍ପ ସଂଖ୍ୟା ସର୍ବାଧିକ ।

ପୂର୍ବରୁ ସୂଚିତ ହୋଇଛି ଯେ ଜଳନ୍ଧରଙ୍କର ଆନୁଷ୍ଠାନିକ ଶିକ୍ଷା ସୀମିତ ଥିଲି । କିନ୍ତୁ ତାହାଙ୍କ ଜ୍ଞାନ ପିପାସା ଥିଲି ଅସୀମ । ଫଳରେ ବିଭିନ୍ନ ବିଷୟରେ ସେ ବିଭିନ୍ନ ଭାଷାରେ ଅସଂଖ୍ୟ ଗ୍ରନ୍ଥ ଅଧ୍ୟୟନ କରିଥିଲେ । ଏହା ସହିତ ବ୍ୟକ୍ତିଗତ ଅନୁଭୂତିରୁ ମଧ୍ୟ ସେ ବହୁ ବିଷୟରେ ନିଜସ୍ୱ ଧ୍ୟାନଧାରଣାକୁ ଦୃଢ଼ୀଭୂତ କରିଥିଲେ । ତାଙ୍କର ସାମାଜିକ ସମ୍ପର୍କ ଥିଲା ବ୍ୟାପକ । ସମାଜର ନିମ୍ନ ସ୍ତରଠାରୁ ଆରମ୍ଭ କରି ସର୍ବୋଚ୍ଚ ସ୍ତର ପର୍ଯ୍ୟନ୍ତ ସେ ବ୍ୟକ୍ତିଗତ ସମ୍ପର୍କ ରକ୍ଷାକରୁଥିଲେ । ଏହି ଅନୁଭୂତି-ପ୍ରସୂତ ବିଭିନ୍ନ ସାମାଜିକ ସମସ୍ୟାହିଁ ତାହାଙ୍କ ଗଳ୍ପଗୁଡ଼ିକର କେନ୍ଦ୍ରବିନ୍ଦୁ । ସମସାମୟିକ ସମାଜରେ ଜାତିପ୍ରଥା ଓ ଧର୍ମନାମରେ ପ୍ରବଞ୍ଚନାକୁ ସେ ସବୁ ସମୟରେ ବିରୋଧ କରୁଥିଲେ । ବ୍ୟକ୍ତି ତଥା ଗୋଷ୍ଠୀଗତ ସ୍ୱାର୍ଥସାଧନ ନିମନ୍ତେ ଶାସ୍ତ୍ରର ଅର୍ଥକୁ ଅନର୍ଥ କରି ଲୋକଙ୍କୁ ପ୍ରବଞ୍ଚିତ କରିବାପାଇଁ ପ୍ରଚଳିତ ଥିବା ସହସ୍ର ବର୍ଷର ପରମ୍ପରାକୁ ସେ ଘୃଣା କରୁଥିଲେ । ଫଳତଃ ତାହାଙ୍କ କ୍ଷୁଦ୍ରଗଳ୍ପରେ ଏହି ଦୁଇଟି ବିଷୟ ଅଧିକ ଗୁରୁତ୍ୱ ପାଇଛି । ଏହା ବ୍ୟତୀତ ମାନବିକ ସମ୍ବେଦନା, ନୈତିକତା-ବୋଧ, ପ୍ରେମ ଓ ପ୍ରଣୟ, ଆଭିଜାତ୍ୟର ବାହ୍ୟାଡ଼ମ୍ବର, ଜାତୀୟ ସ୍ୱାଭିମାନ ପ୍ରଭୃତିକୁ ସେ ତାହାଙ୍କ ଗଳ୍ପର ବିଷୟବସ୍ତୁ ଭାବେ ନିର୍ବାଚିତ କରିଥିଲେ ।

ତାହାଙ୍କ ଗଳ୍ପସମୂହର ଶୈଳ୍ପିକ ଗଠିତ ବିଶେଷ ଉନ୍ନତ ନୁହେଁ । ଶୈଳୀ ଅପେକ୍ଷା ବିଷୟବସ୍ତୁ ଅଧିକ ପ୍ରାଧାନ୍ୟ ପାଇଛି । ଗଳ୍ପର ବିଷୟବସ୍ତୁ ଅଧିକାଂଶ କ୍ଷେତ୍ରରେ ଚରିତ୍ରମାନଙ୍କ କଥୋପକଥନ ମାଧ୍ୟମରେ ବିବୃତ । ଭାଷା ଚରିତ୍ରାନୁସାରୀ ନୁହେଁ । ଶିକ୍ଷିତ ଅଶିକ୍ଷିତ, ସଭ୍ୟ ଅସଭ୍ୟ ଚରିତ୍ର ନିର୍ବିଶେଷରେ ଗୋଟିଏ ପ୍ରକାରର ଭାଷା ପ୍ରୟୋଗ କରାଯାଇଥିବାରୁ ଗଳ୍ପଗୁଡ଼ିକର ଅସ୍ୱାଭାବିକତା ସ୍ପଷ୍ଟ ଉପଲବ୍ଧ ହୋଇଥାଏ । ଭାଷା ସମ୍ବନ୍ଧରେ ଲେଖକଙ୍କ ନିଜସ୍ୱ ମତ ଥିଲା ଯେ କେବଳ ଶୁଦ୍ଧ ସର୍ବଜନବୋଧ ଭାଷାହିଁ ସାହିତ୍ୟରେ ପ୍ରୟୋଗ କରାଯିବା ଉଚିତ । ଆଞ୍ଚଳିକ ବା ସମ୍ପ୍ରଦାୟ ବିଶେଷର ଭାଷାର ବ୍ୟବହାରକୁ ସେ ନିଜେ ସମାଲୋଚନା କରୁଥିବାରୁ , ତାହାଙ୍କ ଗଳ୍ପରେ ଏକ ପ୍ରକାରର ଭାଷା, ଚରିତ୍ର ଓ ଘଟଣା ନିର୍ବିଶେଷରେ ବ୍ୟବହୃତ ହୋଇଛି । ବର୍ଣ୍ଣନା ବାହୁଳ୍ୟ ଏବଂ ଦାର୍ଶନିକତତ୍ତ୍ୱର ବ୍ୟାଖ୍ୟାନଦ୍ୱାରା ଅଧିକାଂଶ

ଗଳ୍ପ ଭାରାକ୍ରାନ୍ତ । ଚରିତ୍ରମାନଙ୍କର ଶିକ୍ଷାଦୀକ୍ଷା ବା ସାମାଜିକ ସ୍ଥିତିକୁ ବିଚାର ନକରି ଲେଖକ ନିଜ ମନର ଭାବ ଓ ଭାବନାକୁ ସେମାନଙ୍କଠାରେ ଆରୋପ କରି ଗଳ୍ପର ଗୁରୁତ୍ୱ ହ୍ରାସ କରିଛନ୍ତି । ଗଳ୍ପର ପ୍ରାରମ୍ଭ କିମ୍ବା ପରିସମାପ୍ତିରେ ପାଠକ ହୃଦୟରେ ଉତ୍କଣ୍ଠାର ଜାଗ୍ରତ ନିମନ୍ତେ କୌଣସି ଆକସ୍ମିକତା ନାହିଁ । ଘଟଣା ପ୍ରବାହ ଅସଂଯତ ନହେଲେ ମଧ୍ୟ ମନ୍ଥର । ବିଷୟ ବିନ୍ୟାସର ଶିଥିଳତା ଯୋଗୁଁ ଗଳ୍ପଗୁଡ଼ିକ ସୁଖପାଠ୍ୟ ନୁହେଁ । ବୋଧହୁଏ ଗୋଟିଏ ଗଳ୍ପ ଲେଖିବା ପୂର୍ବରୁ ଲେଖକ ସେହି ଗଳ୍ପର ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସ୍ଥିର କରି ନେଉଥିଲେ ଏବଂ ସେହି ଉଦ୍ଦେଶ୍ୟ ସାଧନ ନିମନ୍ତେ ସେ ଗଳ୍ପ ଲେଖୁଥିଲେ । ତେଣୁ ଗଳ୍ପଗୁଡ଼ିକ ଅଧିକତର ପ୍ରଚାରଧର୍ମୀ ।

ଉପଯୁକ୍ତ ଦୋଷଦୁର୍ବଳତା ରହିଥିବା ସତ୍ତ୍ୱେ ଜଳନ୍ଧରଙ୍କ କ୍ଷୁଦ୍ରଗଳ୍ପଗୁଡ଼ିକରେ ମାନବିକ ସମ୍ବେଦନଶୀଳତାର ସୁସ୍ପଷ୍ଟ ଆଲେଖ୍ୟ ବିଦ୍ୟମାନ । ସମାଜରେ ଅବହେଳିତ, ନିର୍ଯ୍ୟାତିତ ଓ ଲାଞ୍ଛିତ ଜନତାପ୍ରତି ତାହାଙ୍କର ସମବେଦନା ଅଧିକାଂଶ ଗଳ୍ପରେ ପ୍ରତିଫଳିତ । ଆଦିବାସୀ ଜୀବନର ସୁଖଦୁଃଖ, ପ୍ରଣୟ-ପରିଣୟକୁ ଭିତ୍ତି କରି ସେ ଏକାଧିକ ଗଳ୍ପ ରଚନା କରିଛନ୍ତି । ସମାଜରେ ପ୍ରଚଳିତ ଥିବା ବିଧବାମାନଙ୍କର ଜୀବନଯନ୍ତ୍ରଣା, ଜାତିପ୍ରଥା, ନାରୀଶିକ୍ଷା ପ୍ରତି ପ୍ରତିକୂଳ ମନୋଭାବ, ସ୍ୱାର୍ଥସିଦ୍ଧି ନିମନ୍ତେ ପୁରାଣର ଅର୍ଥକୁ ଅନର୍ଥ କରିବାର ପ୍ରୟାସ ପ୍ରଭୃତି ବିଷୟକୁ ଆଧାରକରି ସେ ତାହାଙ୍କ ଗଳ୍ପଗୁଡ଼ିକ ରଚନା କରିଛନ୍ତି । ଭାରତୀୟ ହିନ୍ଦୁସମାଜରେ ପ୍ରଚଳିତ ଧର୍ମସମ୍ବନ୍ଧୀୟ ବିଭିନ୍ନ ଅନ୍ଧବିଶ୍ୱାସ ତଥା କୁସଂସ୍କାରକୁ ସେ କେତେକ ଗଳ୍ପରେ ତୀବ୍ର ସମାଲୋଚନା କରିଛନ୍ତି ।

### ଗୋଟିଏ କଥା

ଏହା ଜଳନ୍ଧରଙ୍କର ପ୍ରଥମକ୍ଷୁଦ୍ର ଗଳ୍ପ । ୧୩୧୧ ସାଲ ଜ୍ୟେଷ୍ଠ ସଂଖ୍ୟା ଉତ୍କଳ 'ସାହିତ୍ୟ' ପତ୍ରିକାରେ ଏହା ପ୍ରକାଶିତ । ଗଳ୍ପର ରଚନାଶୈଳୀ ବର୍ଣ୍ଣନାଧର୍ମୀ । ଚରିତ୍ରାଙ୍କନ ଅପେକ୍ଷା ବିଷୟବସ୍ତୁ ଏଥିରେ ପ୍ରାଧାନ୍ୟ ପାଇଛି । ଗୃହତ୍ୟାଗୀ ହୋଇ ସନ୍ୟାସୀ ହେଲେ ମଣିଷ ମୁକ୍ତି ପାଇବାର ଲୌକିକ ବିଶ୍ୱାସର ଅର୍ଥହୀନତାକୁ ଏଥିରେ ଦର୍ଶାଯାଇଛି । ପରିସ୍ଥିତିର ବାଧ୍ୟବାଧକତା ତଥା ଅନ୍ୟମାନଙ୍କ ପ୍ରରୋଚନାରେ ମଣିଷ ସନ୍ୟାସୀ ହୁଏ ସମସ୍ତ ପ୍ରକାର ସଂସାରିକ ଲୋଭ, ମୋହ, ମାୟା ଇତ୍ୟାଦିରୁ ମୁକ୍ତି ପାଇବାକୁ । କିନ୍ତୁ ପ୍ରକୃତରେ ପରୋକ୍ଷ ଭାବରେ ସେ ଏହିସବୁ ସାଂସାରିକ କ୍ରିୟାକଳାପରେ ଅଧିକ ଜଡ଼ିତ ହୁଏ ଏବଂ ତା' ମନରୁ ଦୟା, କ୍ଷମା, ପରୋପକାର ଭଳି ସଦ୍‌ଗୁଣଗୁଡ଼ିକ ଲୋପ ପାଏ,— ଏହାହିଁ ଏହି ଗଳ୍ପର ଉପଜୀବ୍ୟ ବିଷୟ ।

ଗୋଟିଏ ଗାଁର ଯୁବକଟିଏ ତା'ର ବନ୍ଧୁକ ଓ ପୋଷାକୁକୁର ସହିତ ପାଖ ଜଙ୍ଗଲକୁ ବୁଲିବା ଉଦ୍ଦେଶ୍ୟରେ ଯାଏ । ଜଙ୍ଗଲରେ କେତେକ ସନ୍ୟାସୀଙ୍କ ସହିତ ତାର ସାକ୍ଷାତ ହୁଏ । ସନ୍ନ୍ୟାସୀମାନଙ୍କ ସହିତ କିଛି ସମୟ ଅତିବାହିତ କରେ ଓ ସେମାନଙ୍କଠାରୁ ରାମକୃଷ୍ଣ ପ୍ରଭୃତି କଥାମାନ ଶ୍ରବଣ କରେ । ସନ୍ନ୍ୟାସୀମାନଙ୍କ ପ୍ରତି ତାର ଆକର୍ଷଣ କ୍ରମେ ବୃଦ୍ଧିପ୍ରାପ୍ତ ହୁଏ । ସେମାନଙ୍କୁ ସେ ନିଜ ଗୃହକୁ ଆମନ୍ତ୍ରଣ କରେ । ସେମାନଙ୍କ ଅନୁରୋଧରେ କେତେକ ହରିଣ ଶିକାର କରି ଛାଲଗୁଡ଼ିକୁ ସନ୍ନ୍ୟାସୀଙ୍କୁ ପ୍ରଦାନ କରେ ।

କିଛି ଦିନ ପରେ ସନ୍ନ୍ୟାସୀମାନେ ବିଦାୟ ନିଅନ୍ତି । ଯୁବକଟି ଅଭ୍ୟାସମତ ସବୁଦିନ ଜଙ୍ଗଲକୁ ଯାଏ । ପୁରୀଯିବା ଉଦ୍ଦେଶ୍ୟରେ ସନ୍ନ୍ୟାସୀମାନେ ପୁଣି ଆସନ୍ତି । ଯୁବକ ସେମାନଙ୍କୁ ନିଜଗୃହରେ ଅପ୍ୟାୟିତ କରି ବିଦାୟ ଦିଏ । ସେମାନଙ୍କ ସହିତ କିଛିବାଟ ଯିବା ସମୟରେ ଗୋଟିଏ ଦୁର୍ଦ୍ଦଶାଗ୍ରସ୍ତ କୁକୁରଛୁଆଟିକୁ ଦେଖେ । ତାହାର ଆକୁଳ ଆର୍ତ୍ତନାଦରେ ଯୁବକଟି ତା' ନିକଟକୁ ଯାଇ ତାର ଶୁଶ୍ରୂଷା କରେ । କିନ୍ତୁ ସନ୍ନ୍ୟାସୀମାନେ ନିର୍ବିକାର ଭାବରେ ଚାଲିଯାଆନ୍ତି । କୁକୁରଟି ସୁସ୍ଥହୋଇ ତା'ନିକଟରେ ରହେ ।

ପୁରୀରୁ ଫେରିବା ବାଟରେ ପୁଣି ସନ୍ନ୍ୟାସୀଙ୍କସହ ଯୁବକର ସାକ୍ଷାତ ହୁଏ । ସେମାନଙ୍କ ଧର୍ମୋପଦେଶ ଶ୍ରବଣ କରିବାରେ ଆଗ୍ରହ ନଦେଖି ସନ୍ନ୍ୟାସୀ ଜଣକ ଏହାର କାରଣ ଜିଜ୍ଞାସା କରେ । ଯୁବକ ଏହି କୁକୁରର ଉଦାହରଣ ଦେଇ ସନ୍ନ୍ୟାସୀମାନଙ୍କ କଥା ଓ ଆଚରଣ ମଧ୍ୟରେ ଥିବା ପାର୍ଥକ୍ୟକୁ ଦର୍ଶାଏ । ସନ୍ନ୍ୟାସୀ ଜଣଙ୍କ ଆତ୍ମସଚେତନ ହୁଏ ଓ କେଉଁ ପରିସ୍ଥିତିରେ ସେ ସନ୍ୟାସ ନେଇଛି ତାହାର ବିସ୍ତୃତ ବର୍ଣ୍ଣନା କରେ । ସ୍ତ୍ରୀ ମୃତ୍ୟୁ , ସଂସାର ପ୍ରତି ବୈରାଗ୍ୟ, ଅନ୍ୟାନ୍ୟ ସନ୍ନ୍ୟାସୀଙ୍କ ପ୍ରରୋଚନା ଫଳରେ ସେ ସନ୍ନ୍ୟାସୀ ହୋଇ ଯେଉଁ ଲୋଭ, ମୋହର ରକ୍ଷା ପାଇବାକୁ ଇଚ୍ଛା କରିଥିଲା, ତାହା କିପରି ବ୍ୟର୍ଥ ହୋଇଛି, ତାହା ପ୍ରକାଶ କରେ । ତାହାଙ୍କ ଭାଷାରେ— "ବାବା ! ଗୃହତ୍ୟାଗୀ ହୋଇ ସୁଦ୍ଧା ଅଧିକତର ରୂପେ ମୋହ ମମତାରେ ଜଡ଼ିତ ହୋଇଅଛୁ । ଦୟା, ପ୍ରେମ ପ୍ରଭୃତି ପ୍ରାକୃତିକ ସଦ୍‌ଗୁଣାନିଚୟ ବିସର୍ଜନ ହୋଇଅଛୁ । କର୍ତ୍ତବ୍ୟ କାର୍ଯ୍ୟରୁ ଭ୍ରଷ୍ଟ ହୋଇଅଛୁ । ସ୍ୱାର୍ଥପର ହୋଇ ସମସ୍ତ କାର୍ଯ୍ୟ କରୁଅଛୁ । କେବଳ ସାଧୁସଙ୍ଗ କଲେ, ରାମ ନାମ ନେଲେ ବୈକୁଣ୍ଠରେ ବସିବ, ଏହି ଆକାଶ କୁସୁମ ତୋଳିବାକୁ ଯାଇ କର୍ତ୍ତବ୍ୟ ପଥ ଭୁଲିଅଛୁ । ଆଜି ବୁଝିପାରିଲି, ଆମ୍ଭମାନଙ୍କ ଅବଲମ୍ବିତ ପନ୍ଥା ନିରର୍ଥକ ଓ ସ୍ୱାର୍ଥପରତାପୂର୍ଣ୍ଣ" — ଏହାହିଁ ଏହି ଗଳ୍ପର ସାରମର୍ମ ।

**ପତିତପାବନ ତୋର**

୧୩୩୭ ସାଲ କାର୍ତ୍ତିକ ସଂଖ୍ୟା 'ଉତ୍କଳ ସାହିତ୍ୟ' ପତ୍ରିକାରେ ଏହା ପ୍ରକାଶିତ । ଭାରତୀୟ ସମାଜରେ ପ୍ରଚଳିତଥିବା ଜାତିପ୍ରଥା ଭଳି କୁପ୍ରଥା ପରମ୍ପରାକୁ ଭିତ୍ତିକରି ଏହା ଲିଖିତ । କୁସଂସ୍କାରଗ୍ରସ୍ତ ମଣିଷ କିପରି ସୌଜନ୍ୟରହିତ ତଥା ଅକୃତଜ୍ଞ ହୋଇଥାଏ, ତାହା ଏଥିରେ ବର୍ଣ୍ଣାଯାଇଛି । ଯେଉଁ ବ୍ରାହ୍ମଣମାନେ ସାମାଜିକ ଜୀବନରେ ଶ୍ରେଷ୍ଠତ୍ୱର ଦାବୀ କରନ୍ତି ଏବଂ ଅନ୍ୟ ଜାତିର ଲୋକଙ୍କୁ ଘୃଣା ଓ ଅବଜ୍ଞା କରନ୍ତି । ସେମାନଙ୍କ ମଧ୍ୟରୁ ଅନେକ କିପରି ତଥାକଥିତ ନୀଚ ଜାତିର ଲୋକଙ୍କ ଦ୍ୱାରା ଉପକୃତ ହୋଇ ମଧ୍ୟ କୃତଘ୍ନ ହୋଇଥାଆନ୍ତି—ତାହା ଏହି ଗଳ୍ପରେ ବର୍ଣ୍ଣିତ ହୋଇଅଛି । ଗଳ୍ପଟିର କଥାବସ୍ତୁ ହେଲା—

ଅବ୍ରାହ୍ମଣ ଗଦେଇବାବୁଙ୍କ ସହିତ ସେହି ଗାଁର ମିଛୁ ମିଶ୍ର ପୁରୀକୁ ତୀର୍ଥ କରିବାକୁ ଯାଇଥିଲେ । ସମସ୍ତ ଖର୍ଚ୍ଚ ବହନ କରିଥିଲେ ଗଦେଇ । କିନ୍ତୁ କୃତଘ୍ନ ମିଛୁ ମିଶ୍ର ଗଦେଇଙ୍କ ପ୍ରତି କୃତଜ୍ଞତା ଜଣାଇବା ପରିବର୍ତ୍ତେ ଗଦେଇଙ୍କଦ୍ୱାରା ସ୍ପୃଷ୍ଟ ମହାପ୍ରସାଦ ଖାଇଲେ ତାଙ୍କ ଜାତିଯିବ ବୋଲି କହି ଭର୍ତ୍ସନା କଲେ । ଫଳରେ ଦୁଃଖ ଓ ଅନୁଶୋଚନାରେ ନିଜ ସ୍ୱକର ଉଜନାସହିତ ଗଦେଇ ନିଜ ଗ୍ରାମକୁ ଫେରି-ଯାଇଥିଲେ । ଲୋଭୀ ମିଛୁ ମିଶ୍ର ସେହିସବୁ ମହାପ୍ରସାଦକୁ ବିକ୍ରି କରି ଘରକୁ ଫେରିବା ଯୋଜନା କରୁଥିବାବେଳେ ସେମାନଙ୍କର ଅନ୍ୟତମ ସହଯାତ୍ରୀ ଧୂନ୍ଦିଆ ବେହେରା ମନ୍ଦିର ଦର୍ଶନ କରି ସେଠାରେ ପହଞ୍ଚିଲା । ଜାତିରେ ଧୋବା ହେଲେ ମଧ୍ୟ ଧୂନ୍ଦିଆ ବିବେକବାନ ଥିଲା । ମିଛୁ ମିଶ୍ରଙ୍କଠାରୁ ସମସ୍ତ କଥା ଶୁଣି ସେ ଦୁଃଖରେ କେବଳ ଦୀର୍ଘଶ୍ୱାସ ପକାଇଲା । ଧୂନ୍ଦିଆ ଯେ ଶ୍ରୀଜଗନ୍ନାଥଙ୍କୁ ମନ୍ଦିରଭିତରେ ଯାଇ ଦେଖିଛି, ମିଛୁ ମିଶ୍ର ଏକଥା ବିଶ୍ୱାସ କଲେ ନାହିଁ । କିନ୍ତୁ ଧୂନ୍ଦିଆ ମିଛୁ ମିଶ୍ରଙ୍କ ଭଳି ବ୍ରାହ୍ମଣମାନଙ୍କର ଅଯୌକ୍ତିକ ଧର୍ମଦ୍ରୋହିତାକୁ ସମାଲୋଚନା କରି କହିଲା—"ନାହିଁ ହେ, ସତକଥା, ମୁଁ ଯାହାକୁ ଦେଖିବାକୁ ଆସିଥିଲି, ତାଙ୍କୁ ଦେଖିଲି । ଶ୍ରୀମୁଖ ନଦେଖି ମୁଁ କ'ଣ ଫେରୁଥିଲି ? ଏ ତ ତୁମ ଗ୍ରାମ ଜଗନ୍ନାଥ ନୁହନ୍ତି ଯେ, ମୁଁ ଭିତରକୁ ପଶିବାକୁ ଥରହର ହେବି, କି ତୁମେ ବା ତୁମ ପରି ଦୁଇ ଚାରିଜଣ ବ୍ରାହ୍ମଣ ବାନ୍ଧିଧରି ଡାଙ୍ଗିବ ? ଏ ଯେ ଦାରୁବ୍ରହ୍ମ ଜଗନ୍ନାଥସ୍ୱାମୀ, ପତିତପାବନ ଏହାଙ୍କ ନାମ । ଏହାଙ୍କୁ ଦେଖିଲେ, ଛୁଇଁଲେ ମୁଁ ଦୋଷୀହେବି ନାହିଁ ବୋଲି ମୋର ବିଶ୍ୱାସ, ଏଣୁ ପଇସା ଖର୍ଚ୍ଚକରି ଭିତରକୁଯାଇ ଦେଖି ଆସିଲି, ଜୀବନ ସାର୍ଥକ କଲି । ଏହାଙ୍କଠାରେ ତୁମେ ମୁଁ ସମାନ ।"

ଏହାଶୁଣି ମିଛୁ ମିଶ୍ରଙ୍କର ଭୀଷଣ ରାଗ ହେଲେ ମଧ୍ୟ ଗାଁକୁ ଫେରିବାକୁ ପଡ଼ିବ ଏବଂ ଧୂନ୍ଦିଆର ସାଙ୍ଗ ଅପରିହାର୍ଯ୍ୟ । ଏହାଭାବି ମୁହଁରେ କିଛି ପ୍ରକାଶ କଲେ ନାହିଁ ।

ପରଦିନ ଦୁହେଁ ଘରକୁ ଫେରିଲେ । ଖୋରଧା ନିକଟସ୍ଥ ଆମ୍ବତୋଟାରେ ମିଚ୍ଛୁ ମିଶ୍ର ହଇଜାରେ ଆକ୍ରାନ୍ତ ହେଲେ । ଯେଉଁ ଧୋବାକୁ ଅସ୍ପୃଶ୍ୟ ବୋଲି ଘୃଣା କରୁଥିଲେ, ଅବସ୍ଥା ଚକ୍ରରେ ମିଚ୍ଛୁ ମିଶ୍ର ତାହାରି ହାତରୁ ଜଳପାନ କଲେ ଏବଂ ସେହି ଧୋବା ଧୂଦିଆ ବେହେରା ତାଙ୍କ ଦେହ ହାତରେ ହାତବୁଲାଇ ସେବାଶୁଶ୍ରୂଷା କଲା । ଦୁଇଦିନ ବିତିଗଲା ପରେ ମଧ୍ୟ ମିଚ୍ଛୁ ମିଶ୍ରଙ୍କ ଦେହ ଭଲ ନ ହେବାରୁ ଧୂଦିଆ ଖୋରଧା ଡାକ୍ତରଖାନାରେ ତାଙ୍କୁ ରଖାଇବାର ଯୋଗାଡ଼ରେ ଗାଁ ମଧ୍ୟକୁ ଗଲା । ଏହି ସମସ୍ତ ମଧ୍ୟରେ ଶୋଷରେ ବ୍ୟତିବ୍ୟସ୍ତ ହୋଇ ମିଚ୍ଛୁ ମିଶ୍ର ଧୂଦିଆର ରାନ୍ଧିଲା ହାତରୁ ପେଜସବୁ ପିଇଦେଲେ । ଗାଁର ଲୋକମାନଙ୍କ ସହାୟତାରେ ମିଚ୍ଛୁ ମିଶ୍ରଙ୍କୁ ଖୋରଧା ଡାକ୍ତର-ଖାନାରେ ରଖି ସେ ଘରକୁ ଫେରିଲା । ଗାଁରେ ତା'ର ପୁରୀ ଦର୍ଶନ କଥା ବହୁଲୋକଙ୍କ ଆଗରେ କହିଲା । କିନ୍ତୁ ଗାଁର ବ୍ରାହ୍ମଣମାନେ ଧୂଦିଆର ଜଗନ୍ନାଥ ଦର୍ଶନକୁ ପାପକର୍ମ ବୋଲି କହି ବିରକ୍ତି ପ୍ରକାଶ କଲେ । କେହି କେହି କହିଲେ "ତୋ ମୁଣ୍ଡରେ ବଜ୍ର ପଡ଼ୁ, ତୋର ଖଣ୍ଡ ଗଙ୍ଗ ହେଲଣି ।" କିନ୍ତୁ ଧୂଦିଆ ଏସବୁ କଥାରେ ମନ ଦିଏ ନା । ସେ ଗାଁର ଲୋକଙ୍କ ଉପକାର କରି ସମୟ କଟାଏ । ମିଚ୍ଛୁ ମିଶ୍ର ଯେ ତା'ଠାରୁ ପାଣି ପିଇଛନ୍ତି, ତା'ର ପେଜ ପିଇଛନ୍ତି, ଏବଂ ସେ ତାଙ୍କୁ ସ୍ପର୍ଶ କରି ସେବା ଶୁଶ୍ରୂଷା କରିଛି । ଏକଥା ସେ କାହାରି ସମ୍ମୁଖରେ ପ୍ରକାଶ କଲା ନାହିଁ ।

କିଛିଦିନ ପରେ ମିଚ୍ଛୁ ମିଶ୍ର ଆରୋଗ୍ୟ ହୋଇକରି ଗାଁକୁ ଫେରିଲେ । ଧୂଦିଆର ଉପକାର ଓ ସେବା ଶୁଶ୍ରୂଷାକୁ ସ୍ମରଣ କରିବା ପରିବର୍ତ୍ତେ, ଏହାଦ୍ୱାରା ତାଙ୍କର ଜାତିନାଶ ଓ ଧର୍ମନାଶ ହୋଇଛି ବୋଲି ବିଚାର କରି ଧୂଦିଆର ମୃତ୍ୟୁ କାମନା କଲେ । ସେ ସର୍ବଦା ଭାବୁଥାନ୍ତି—"ଚଣ୍ଡାଳ ପ୍ରଥମେ ଜଗନ୍ନାଥ ମନ୍ଦିରରେ ପ୍ରବେଶ କଲା । ପରେ ବ୍ରାହ୍ମଣକୁ ମଧ୍ୟ ଅପ୍ରତିଷ୍ଠା କଲା । ତା' ମୁଣ୍ଡରେ ବଜ୍ରବାଡ଼ି ପଡ଼ିଲା ନାହିଁ, ତାକୁ ଡାକୁଣୀ ସ୍ପର୍ଶ କଲା ନାହିଁ । ମଡ଼କ ଧରିଲା ମୋତେ ।" ଯଦିଓ ଧୂଦିଆ ଦୈନନ୍ଦିନ କର୍ମବ୍ୟସ୍ତତାରୁ ଅତୀତ ଘଟଣାମାନ ଭୁଲିଯାଇଛି, ତଥାପି ମିଚ୍ଛୁ ମିଶ୍ର ପ୍ରତିଦିନ ଦେବତାଙ୍କୁ ଧୂଦିଆର ମୃତ୍ୟୁ ନିମନ୍ତେ ପ୍ରାର୍ଥନା କରୁଥିଲେ । କାରଣ ସେ ଭାବୁଥିଲେ ତାଙ୍କ ଜୀବନର କଳଙ୍କକୁ ଜାଣି ଜଣେ ଲୋକ ତାଙ୍କ ସମ୍ମୁଖରେ ବଞ୍ଚିରହିଥିବାଯାଏ, ସେ କେବେ ନିଶ୍ଚିନ୍ତ ହୋଇପାରିବେ ନାହିଁ ।

ବହୁବର୍ଷ ପରେ ଧୂଦିଆର ମୃତ୍ୟୁ ହୋଇଛି । ତା'ର ପରୋପକାର ସ୍ମରଣକରି ଗାଁର ସମସ୍ତେ ତା' ମୃତ୍ୟୁରେ ଶୋକାକୁଳ । କିନ୍ତୁ ମିଚ୍ଛୁ ମିଶ୍ର ମନେମନେ ଭାବିଲେ "ଧୂଦିଆ ମଲା, ପାପଗଲା" । ତାଙ୍କର ମାନସିକ ଅଶାନ୍ତି ଦୂରହେଲା । ଏହାହିଁ ସଂକ୍ଷେପରେ ଏହି ଗଳ୍ପର ବିଷୟବସ୍ତୁ । ମଣିଷ ନୀଚ ଜାତିରେ ଜନ୍ମ ହେଲେ ମଧ୍ୟ ଆଚରଣର ଶୁଦ୍ଧତାଦ୍ୱାରା ଉଚ୍ଚାସନ ପାଇପାରେ । ଉଚ୍ଚଜାତିରେ ଜନ୍ମହୋଇ

କପଟ ଅମାନବୀୟ ଆଚରଣ କରୁଥିଲେ, ତାହା ମିଶ୍ର ମିଶ୍ର ଓ ଅନ୍ୟାନ୍ୟ ବ୍ରାହ୍ମଣ ମାନଙ୍କ କଥୋପକଥନରୁ ସ୍ପଷ୍ଟ ହୋଇଛି, ଛୁଆଁ ଅଛୁଆଁ ଭେଦଭାବ ମନୁଷ୍ୟକୃତ ଏବଂ ଭଗବାନଙ୍କ ଦୃଷ୍ଟିରେ ସବୁ ମଣିଷ ସମାନ, ଏହାହିଁ ଏହି ଗଳ୍ପର ମୁଖ୍ୟ ପ୍ରତିପାଦ୍ୟ ବିଷୟ ବସ୍ତୁ । ଗଳ୍ପର ନାମକରଣ 'ପତିତପାବନ ଡୋରି'' ର ସାର୍ଥକତା ରହିଛି ତଥାକଥିତ ଅସ୍ପୃଶ୍ୟ ଧୁଡିଆର ପତିତପାବନ ଜଗନ୍ନାଥଙ୍କ ଡୋରିରେ ଟାଣିହୋଇ ପୁରୀକୁ ତୀର୍ଥକରିବାକୁ ଯିବା ଏବଂ ଜଗନ୍ନାଥଙ୍କୁ ଶ୍ରୀମନ୍ଦିର ଦର୍ଶନ କରିବାରେ । ସମସାମୟିକ ପରିସ୍ଥିତିରେ ଏହି ଗଳ୍ପଟି ଅତ୍ୟନ୍ତ ଶିକ୍ଷଣୀୟ ହୋଇପାରିଛି ।

## ମଧୁରାମର ମୁକ୍ତି

୧୯୩୬ ସାଲ ମାର୍ଗଶିର ସଂଖ୍ୟା 'ଉତ୍କଳ ସାହିତ୍ୟ' ପତ୍ରିକାରେ ଏହା ପ୍ରକାଶିତ । ହିନ୍ଦୁଧର୍ମରେ ପ୍ରଚଳିତ ପ୍ରତିମାପୂଜାର ପ୍ରତିବାଦରେ ଏହି ଗଳ୍ପଟି ରଚିତ । ଆମ ପରମ୍ପରାରେ ଥିବା ତେତିଶ କୋଟି ଦେବାଦେବୀଙ୍କ ଆରାଧନା ମୂଳରେ ଶାସ୍ତ୍ରୀୟ ଭିତ୍ତି ନଥିଲେ ମଧ୍ୟ ପୁରାଣରେ ବିଭିନ୍ନ କାଳ୍ପନିକ କାହାଣୀମାନ ସଂଯୋଜନା କରି ଏହିସବୁ ମୂର୍ତ୍ତିପୂଜା ସୃଷ୍ଟି କରାଯାଇଥିବା କଥା ଲେଖକ ତାହାଙ୍କର ଏକାଧିକ ପ୍ରବନ୍ଧରେ ପ୍ରତିପାଦନ କରିଛନ୍ତି । ଏହି ଗଳ୍ପରେ ଅତି ସୁନ୍ଦର ଭାବରେ ସେ ପ୍ରତିମା ପୂଜାର ନିରର୍ଥକତାକୁ ରୂପାୟିତ କରିଛନ୍ତି । ଗଳ୍ପଟି ହେଉଛି—

ମଧୁରାମ କାଶ୍ମୀରରେ ଜନ୍ମ । କିନ୍ତୁ ମୁକ୍ତି ଆଶାରେ ଗୃହତ୍ୟାଗୀ । ସନ୍ନ୍ୟାସୀର ଜୀବନଯାପନ କରେ । ଶାଳଗ୍ରାମ ଟିଏ । ଗୋଟିଏ ବାଣଲିଙ୍ଗ, ଗୋଟିଏ ଆଣ୍ଠୁଆ ଗୋପାଳ ମୂର୍ତ୍ତି ଓ ତିନିଗୋଟି ଚନାମାଟି ନିର୍ମିତ ପିରୁଲାକୁ ଗୋଟିଏ ସୁନ୍ଦର ଖଟୁଲିରେ ରଖି ଆରାଧନା କରେ । ଯେଉଁ ଗାଁରେ ଆସି ସେ ଦୀର୍ଘଦିନ ରହିଥିଲା, ସେଠାକାର ଲୋକମାନଙ୍କ ସହ ତାହାର ଘନିଷ୍ଠ ଆତ୍ମୀୟତା ପ୍ରତିଷ୍ଠିତ ହୋଇଛି । ପ୍ରତିଦିନ ସକାଳୁ ଅତି ଯତ୍ନରେ ପ୍ରତିମାଗୁଡ଼ିକୁ ସଜାଏ । ଭିକ୍ଷା କରି ଯାହା କିଛି ପାଏ, ପ୍ରତିମା ନିକଟରେ ଭୋଗ ଲଗାଏ ଓ ବାଳକମାନଙ୍କୁ ବିତରଣ କରେ । ବହୁଦିନ ପରେ ଦିନେ ହଠାତ୍ ସେ ଗାଁ ଛାଡ଼ି ଚାଲିଯିବା ପାଇଁ ସ୍ଥିର କରିଛି । ଗା ଲୋକମାନେ ଚାଲିଯିବାର କାରଣ ପଚାରିବାରୁ ସେ କହିଛି ଯେ ତା ଖଟୁଲିର ଚନା ମୂର୍ତ୍ତିଗୁଡ଼ିକ ଶାଳଗ୍ରାମ, ଆଣ୍ଠୁଆ ଗୋପାଳ ଇତ୍ୟାଦିଙ୍କୁ ରାତିରେ ହଇରାଣ କରୁଛନ୍ତି । ତେଣୁ ଶାଳଗ୍ରାମ ତାକୁ ଅନୁରୋଧ କରିଛନ୍ତି, ନିଜର ଜନ୍ମସ୍ଥାନ ଭୁଟାନରେ ତାହାଙ୍କୁ ଛାଡ଼ିଆସିବା ପାଇଁ । ଶାଳଗ୍ରାମ ଓ ମଧୁରାମର କଥୋପକଥନରୁ ଜଣାଯାଉଛି ଯେ ମଣିଷ ଗୃହ ପରିବାର ତ୍ୟାଗକରେ ବନ୍ଧନ ମୁକ୍ତ ହୋଇ ମୁକ୍ତିର କାମନାରେ । କିନ୍ତୁ ପ୍ରକୃତରେ ସେ ବନ୍ଧନ ମୁକ୍ତ ହୋଇପାରେନା । ସନ୍ତାନ ସନ୍ତତିଙ୍କ ବନ୍ଧନରୁ ମୁକ୍ତ ହେଲେ ମଧ୍ୟ ପ୍ରତିମାଙ୍କ ପ୍ରତି ତା'ର ବନ୍ଧନ ଅଧିକରୁ ଅଧିକ ଦୃଢ଼ ହୁଏ । ତେଣୁ ଯଥାର୍ଥ ମୁକ୍ତ ମିଳେ

ମଣିଷର ସେବାରୁ । ପ୍ରତିମାର ସେବାରୁ ନୁହେଁ ବୋଲି ଶାଳଗ୍ରାମ ମହାପାତ୍ରଙ୍କୁ କହିବାରୁ ତାର ଜ୍ଞାନୋଦୟ ହୋଇଛି । ତେଣୁ ସେ ପ୍ରତିମାଗୁଡ଼ିକୁ ସେମାନଙ୍କ ନିଜନିଜ ସ୍ଥାନରେ ଛାଡ଼ିଦେଇ ପୁଣି ନିଜ ପରିବାରକୁ ଫେରିଯିବା ପାଇଁ ସ୍ଥିର କରିନେଇଛି । ହିନ୍ଦୁ ଧର୍ମରେ ପ୍ରଚଳିତ ଧର୍ମ, ଅର୍ଥ, କାମ ଓ ମୋକ୍ଷାଦିର ଅର୍ଥ କିପରି ଭିନ୍ନ ଭିନ୍ନ ଭାବରେ କରାଯାଇ ସାଧାରଣ ଲୋକଙ୍କୁ ବିଭ୍ରାନ୍ତ କରାଯାଇଛି, ତାହା ଶାଳଗ୍ରାମଙ୍କ ମୁଖରେ ଲେଖକ କୁହାଇଛନ୍ତି —"ଚାରି ପ୍ରସିଦ୍ଧ ଚାରିଗୋଟି ଶବ୍ଦ ଅଛି । ଧର୍ମ, ଅର୍ଥ, କାମ, ମୋକ୍ଷ । ଏ ଶବ୍ଦଗୁଡ଼ିକର ବ୍ୟାଖ୍ୟାର ସୀମା ନାହିଁ । ଏ ଶବ୍ଦଟିମାନ ସ୍ୱର୍ଗରୁ ଗଢ଼ାହୋଇ ଆସି ନାହିଁ । ମନୁଷ୍ୟ ଏମାନଙ୍କର କର୍ତ୍ତା, ନିଜ ନିଜ ମତପୋଷଣ ନିମନ୍ତେ ପଣ୍ଡିତମାନେ ଗୋଟିଏ ଗୋଟିଏ ବ୍ୟାଖ୍ୟାର କଳ୍ପନା କରିଛନ୍ତି ।" ଏଣୁ ଗୃହସ୍ଥାଶ୍ରମରେ ରହି ପିତା, ମାତା, ପୁତ୍ର କନ୍ୟାଙ୍କସହ ସମାଜର ଅନ୍ୟାନ୍ୟ ମନୁଷ୍ୟଙ୍କ ପ୍ରତି ଯଥାଯଥ କର୍ତ୍ତବ୍ୟ ସମ୍ପାଦନଦ୍ୱାରା ପ୍ରକୃତ ମୁକ୍ତି ମିଳିଥାଏ ବୋଲି ଶାଳଗ୍ରାମ କହିଛନ୍ତି । କାରଣ ପ୍ରତିମା ପୂଜାଦ୍ୱାରା ସମାଜର କିଛି ମଙ୍ଗଳ ହୁଏ ନାହିଁ, ବରଂ ସେହିମାନେ ଯଦି ନିଜନିଜର କର୍ତ୍ତବ୍ୟ କର୍ମରେ ନିୟୋଜିତ ହୁଅନ୍ତେ ତେବେ ସମାଜ ଓ ଜାତିର ଅଶେଷ କଲ୍ୟାଣ ସାଧିତ ହୁଅନ୍ତା ।

ଗଳ୍ପଟିର ଉପସ୍ଥାପନା ଶୈଳୀ ସୁନ୍ଦର ହୋଇଛି । ପୁରାଣ ଓ ଶାସ୍ତ୍ରର ଜଟିଳ ପ୍ରଶ୍ନକୁ ଚତୁରତାର ସହ ଏହି ଗଳ୍ପରେ ପ୍ରକାଶ କରାଯାଇଛି । ବନ୍ଧନମୁକ୍ତ ହେବାର ପରିକଳ୍ପନାରେ ଯେଉଁ ଶତଶତ ସାଧୁ ସନ୍ୟାସୀ ପାରିବାରିକ ବନ୍ଧନକୁ ତ୍ୟାଗ କରନ୍ତି, ସେମାନେ ଏହି ପ୍ରତିମା ପୂଜା ଭଳି ନିରର୍ଥକ ବନ୍ଧନରେ ତାହାଠାରୁ ଅଧିକ ଭାବେ ଆବଦ୍ଧ ହୁଅନ୍ତି । ଫଳରେ ସମାଜ କିମ୍ବା ଜାତି ସେମାନଙ୍କଠାରୁ କୌଣସି ପ୍ରତିଦାନ ପାଏନା । ଏହି ଦୃଷ୍ଟିରୁ ସେମାନେ ମୁକ୍ତି ତ ପାଆନ୍ତି ନାହିଁ, ବରଂ ତାଙ୍କ ମାନବଜୀବନ ବ୍ୟର୍ଥହୁଏ— ଏହାହିଁ ଏହି ଗଳ୍ପର ମର୍ମବାଣୀ ।

**ପ୍ରକୃତିର ପ୍ରତିଶୋଧ**

ଏହା ଏକ ମାନବିକ ସମ୍ବେଦନାର ଗଳ୍ପ । ୧୩୪୦ ସାଲ ଆଶ୍ୱିନ ସଂଖ୍ୟା 'ଉତ୍କଳ ସାହିତ୍ୟ' ପତ୍ରିକାରେ ଏହା ପ୍ରକାଶିତ । ଗଳ୍ପର ନାମକରଣ ବିଷୟାନୁସାରୀ ହୋଇଛି । ପ୍ରକୃତିର ଦୟା ଉପରେ ନିର୍ଭରଶୀଳ ଆଦିବାସୀମାନଙ୍କର ଦୁଃଖ ଯନ୍ତ୍ରଣା ପରିପୂର୍ଣ୍ଣ ଜୀବନର କରୁଣ କାହାଣୀକୁ ଭିତ୍ତିକରି ଏହା ରଚିତ । ସେହି ଅବହେଳିତ ଧୂକୃତିର ସନ୍ତାନମାନଙ୍କ ଉପରେ ପ୍ରକୃତି ବେଳେବେଳେ ପ୍ରତିଶୋଧ ପରାୟଣ ହୋଇ ସେମାନଙ୍କ ଜୀବନର ସମସ୍ତ ଆଶା ଭରସାକୁ ଧ୍ୱଂସବିଧ୍ୱଂସ କରିଦିଏ, ତାହା ଏଥିରେ ଦର୍ଶାଯାଇଛି । ପରିବେଶ ଓ ପରିସ୍ଥିତିର ତାଡ଼ନାରେ ମଣିଷ ପଶୁ ଭଳି ହିଂସ୍ର ଓ ବିବେକଶୂନ୍ୟ ହୋଇଥାଏ । ମଣିଷ ଜୀବନର ଏଭଳି କେତେକ ଘଟଣା ଘଟେ

ଯାହା ଫଳରେ ତାହାର ହୃଦୟରୁ ଦୟା' କ୍ଷମା, ସ୍ନେହ ମମତା ଆଦି ମାନବିକ ଗୁଣସମୂହ ନଷ୍ଟ ହୋଇଯାଏ । କିନ୍ତୁ ସମୟ ଆସେ, ସେହି ଭଳି ପରିସ୍ଥିତିର ସମ୍ମୁଖୀନ ହୋଇ ତା'ର ବିଲୁପ୍ତ ମାନବିକ ସମ୍ବେଦନା ଜାଗ୍ରତ ହୁଏ ଏହିଭଳି କେତେକ ଘଟଣା ଆଲୋଚ୍ୟ ଗଳ୍ପରେ ସୁନ୍ଦର ଭାବେ ରୂପାୟିତ ହୋଇଛି । ସଂକ୍ଷେପରେ ଗଳ୍ପର ବିଷୟବସ୍ତୁ ହେଲା—

ଗଳ୍ପର ପ୍ରାରମ୍ଭରେ ସଭ୍ୟତାର ଆଲୋକ ପ୍ରବେଶ କରିନଥିବା ପାହାଡ଼ିଆ ଆଦିବାସୀ ଗାଁଗୁଡ଼ିକରେ କୃମିଜୀବୀ ଆଦିବାସୀମାନଙ୍କ ଜୀବନ ଯନ୍ତ୍ରଣାର ବର୍ଣ୍ଣନା କରାଯାଇଛି । ବର୍ଷ ସାରା ସେମାନେ ଅନାହାର କିମ୍ବା ଅର୍ଦ୍ଧାହାର ମଧ୍ୟରେ ଅତିବାହିତ କରନ୍ତି । ତା' ସହିତ ଅପରିଷ୍କୃତ ଜଳପାନ ଯୋଗୁ ପ୍ରତିବର୍ଷ ହଇଜା ମହାମାରୀ ରୋଗ ସେମାନଙ୍କର ଚିରସହଚର । ଏହିଭଳି ଏକ ଅଭିଶପ୍ତ ଗାଁର ଘଟଣା । ଆଷାଢ଼ ମାସ ଶୁକ୍ଳପକ୍ଷର ରାତି ସେଠାରେ ଭୟଙ୍କର ବର୍ଷଣମୁଖର ମେଘ ଯୋଗୁ ଗାଢ଼ ଅନ୍ଧକାର ପାହାଡ଼ ତଳେ ବୃକ୍ଷ ଉହାଡ଼ରେ ଗୋଟିଏ ନିର୍ଜ୍ଜନ ଘର । ଘର ଭିତରେ ଗୋଟିଏ ପାଖରେ ଗଦାଏ ନିଆଁ, ଅନ୍ୟ ପାଖରେ ମିଞ୍ଜି ମିଞ୍ଜି ଜଳୁଥିବା କଡ଼ାତେଲର ଦୀପଟିଏ । ଘରର ମଧ୍ୟସ୍ଥାନରେ ରୋଗଶଯ୍ୟାରେ ମୃତ୍ୟୁ ସହିତ ସଂଗ୍ରାମରତ ଗୋଟିଏ ଚାରିବର୍ଷର ଶିଶୁ । ପାଖରେ ଆଶଙ୍କା ଜର୍ଜ୍ଜରିତ ହୃଦୟରେ ତା'ର ମାଆ ନିବିଷ୍ଟ ଚିତ୍ତରେ ଉପବିଷ୍ଟା । ବାହାରେ ଭୀଷଣ ବର୍ଷା ଓ ବଜ୍ରପାତ ।

ଗାଁ'ଟି ଜନମାନବଶୂନ୍ୟ । କିଛିଦିନ ତଳେ ହଇଜାରେ ଆକ୍ରାନ୍ତ ହୋଇ ଅଧିକାଂଶ ଗ୍ରାମବାସୀ ମୃତ । ଯେଉଁମାନେ ବଞ୍ଚିଥିଲେ, ସେମାନେ ଗ୍ରାମାନ୍ତରକୁ ପଳାୟନ କରିଛନ୍ତି । ଜନ୍ମମାଟିର ମମତାକୁ ଉପେକ୍ଷା କରିନପାରି ଏହି ଦୁଇଟି ପ୍ରାଣୀ କେବଳ ସେଠାରେ ରହିଛନ୍ତି । ରାତିର ଏହି ଭୟଙ୍କର ଅବସ୍ଥାରେ ଗୋଟିଏ ଡକାୟତ ସେଠାରେ ପ୍ରବେଶ କରିଛି । ଧନ ସମ୍ପତ୍ତି ପାଇଁ ସେ ସେହି ରମଣୀକୁ ଧମକାଇଛି । ବିପଦଗ୍ରସ୍ତ ରମଣୀ ତା'ର ସମସ୍ତ କଥା ବର୍ଣ୍ଣନା କରିଛି । ଗାଁରେ ହଇଜାର ପ୍ରକୋପ, ଅନ୍ୟମାନଙ୍କର ପଳାୟନ, ତା'ର ସ୍ୱାମୀଙ୍କର ହଇଜାରେ ମୃତ୍ୟୁ ଓ ବର୍ତ୍ତମାନ ଶିଶୁପୁତ୍ର ମଧ୍ୟ ଚାରିଦିନ ହେବ ହଇଜାରେ ଆକ୍ରାନ୍ତ । ଏ ଅବସ୍ଥାରେ ସେ ନିଜେ ଯାଇ କିଛି ଦେବା ଅପେକ୍ଷା, ଡକାୟତ ନିଜେ ଘର ମଧ୍ୟରୁ ଯାହା ଧନସମ୍ପତ୍ତି ମିଳିବ ନେଇଯିବ ବୋଲି ପ୍ରକାଶ କରିଛି । ଏହି ସମୟରେ ଡକାୟତର ନିଜ ଅତୀତ ମନେପଡ଼ିଛି । ତା'ର ମଧ୍ୟ ଏହିଭଳି ସ୍ତ୍ରୀ ଥିଲା, ସନ୍ତାନ ଥିଲେ, ଘର ମଧ୍ୟ ଥିଲା । ଏହିଭଳି ହଇଜାରେ ତା'ର ସ୍ତ୍ରୀ ଓ ସନ୍ତାନ ମଲେ । ସେ ହେଲା ଗୃହତ୍ୟାଗୀ । ପଥରେ ଡକାୟତମାନଙ୍କ ସହିତ ସାକ୍ଷାତ ହେବାକୁ ସେ ସେମାନଙ୍କ ସହିତ ଡକାୟତି କରୁଛି ବୋଲି ପ୍ରକାଶ କରିଛି । ଆଜି ଏହି ରୋଗଗ୍ରସ୍ତ ଶିଶୁ ଓ ଅସହାୟା ମା'କୁ ଦେଖି ତା' ମନରେ

ମାନବିକ ସମ୍ବେଦନ ପୁଣି ଜାଗ୍ରତ ହୋଇଛି । ସେ ତକାସୁଡବୃତ୍ତି ଛାଡ଼ି ସେଠାରେ ମା' ଓ ଶିଶୁପୁତ୍ରର ସେବାଶୁଶ୍ରୂଷା କରିବାପାଇଁ ପ୍ରତିଜ୍ଞାବଦ୍ଧ ହୋଇଛି । ସେ କହୁଛି— "ପୋଲିସ ମତେ ଜେଲ ଦେଉ, ଫାଶି ଦେଉ, ମୁଁ ତକାସୁଡବୃତ୍ତି ଛାଡ଼ି ଏଠାରେ ରହି ତୁମର ସାହାଯ୍ୟ କରିବି । ତୁମ ପୁଅ ସମ୍ପୂର୍ଣ୍ଣ ରୋଗମୁକ୍ତ ହେଲେ ମୁଁ ବିଦାୟ ନେଇ ଦେଶାନ୍ତରକୁ ଚାଲିଯିବି ।"

ଏହି ଗଳ୍ପରେ ଲେଖକ ତାହାଙ୍କ ନୈତିକ ଭାବନାକୁ ରୂପ ଦେବାପାଇଁ ସଚେଷ୍ଟ ପ୍ରଥମରୁ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସଚେତନ ହୋଇଯାଇଥିବା ଦୃଷ୍ଟିରୁ ଗଳ୍ପର ବର୍ଣ୍ଣନା ଶୈଳୀ, ଭାଷା ଓ ଚରିତ୍ର ଚିତ୍ରଣରେ ବହୁ ଅସ୍ୱାଭାବିକତା ରହିଯାଇଛି । ଅଶିକ୍ଷିତ ଆଦିବାସୀ ନାରୀ ମୁଖରେ ଯେଉଁ ସବୁ ଦାର୍ଶନିକ ତତ୍ତ୍ୱମୂଳକ ସୂତ୍ରର ଅବତାରଣା କରାଯାଇଛି, ତାହା ଗାର୍କିଙ୍କ ବିଶ୍ୱମୂଳ ଧାରଣାର ପ୍ରତିଧ୍ୱନି ମାତ୍ର । ବର୍ଣ୍ଣନା ବାହୁଲ୍ୟ ଥିଲେ ମଧ୍ୟ ଗଳ୍ପର ବିଷୟବସ୍ତୁ ହୃଦୟସ୍ପର୍ଶୀ ହୋଇପାରିଛି ।

**ସାନ୍ଧ୍ୟ ଗଗନ**

'ଉତ୍କଳ ସାହିତ୍ୟ' ପତ୍ରିକାରେ ୧୩୩୭ ସାଲ ମାର୍ଗଶିର ସଂଖ୍ୟାରେ ଏହି ଗଳ୍ପଟି ପ୍ରକାଶିତ ହୋଇଛି । ଏହା ଏକ ଆଧ୍ୟାତ୍ମିକ ତତ୍ତ୍ୱ ସମ୍ବଳିତ ଗଳ୍ପ । ଉପନିଷଦୀୟ ଚିନ୍ତାଧାରାର ଅତି ସୂକ୍ଷ୍ମ ପର୍ଯ୍ୟାଲୋଚନା ଗଳ୍ପ ଜରିଆରେ କରାଯାଇଛି । ସୃଷ୍ଟିର ବିଳୟ, ଆରମ୍ଭର ଶେଷ, ଜୀବନର ମୃତ୍ୟୁ ଭିତ୍ତି ଶାଶ୍ୱତ ସତ୍ୟର ଉପସ୍ଥାପନ ସୁନ୍ଦର ଭାବରେ ଏହି ଗଳ୍ପ ମଧ୍ୟରେ ବିବୃତ । ସୃଷ୍ଟି ପରିବର୍ତ୍ତନଶୀଳ । ପ୍ରତିମୁହୂର୍ତ୍ତରେ ଏହି ପରିବର୍ତ୍ତନ ସଂଗଠିତ ହୋଇଥାଏ । କେତେକ ପରିବର୍ତ୍ତନ ମଣିଷ ମନରେ ଗଭୀର ରେଖାପାତ କରିଥାଏ । କାରଣ ସେହି ଅବସ୍ଥା ବା ବସ୍ତୁ ସହିତ ମଣିଷର ଆତ୍ମୀୟତା ଅଧିକ ଥାଏ । ଏହି ତାତ୍ତ୍ୱିକ ବ୍ୟାଖ୍ୟା ଲେଖକ ପିତା ଓ କନ୍ୟାର କଥୋପକଥନ ମାଧ୍ୟମରେ ବର୍ଣ୍ଣନା କରିଛନ୍ତି । ଗଳ୍ପର ସାରାଂଶ ହେଉଛି—

ଶରତ ଋତୁର ଏକ ସନ୍ଧ୍ୟାକାଳୀନ ଦୃଶ୍ୟ । ପିତା ଓ କନ୍ୟା ଘାସ ପଡ଼ିଆରେ ବସି ସେହି ମନୋରମ ଦୃଶ୍ୟ ଅବଲୋକନ କରୁଛନ୍ତି । ଅସ୍ତଗାମୀ ସୂର୍ଯ୍ୟଙ୍କ ସୁନେଲି କିରଣ ଦ୍ୱାରା ଆକାଶରେ ଭିନ୍ନ ଭିନ୍ନ ସୌନ୍ଦର୍ଯ୍ୟ ପ୍ରକଟିତ ହେଉଛି । ପ୍ରକୃତିର ଏହି ସୌନ୍ଦର୍ଯ୍ୟରେ ଆତ୍ମବିଭୋର ହୋଇ ପିତାର ଅତୀତ ଜାଗ୍ରତ ହୋଇଛି । ବିଶ୍ୱକର୍ତ୍ତାଙ୍କ ଏହି ବିଚିତ୍ର ଲୀଳା ସ୍ମରଣରେ ତାଙ୍କ ଆଖିରୁ ଦୁଇଟୋପା ଲୁହ ଝରିପଡ଼ୁଛି କନ୍ୟାର ଗଣ୍ଡଦେଶରେ । ଶିଶୁକନ୍ୟା ଆଶ୍ଚର୍ଯ୍ୟ ହୋଇ ପିତାଙ୍କର କ୍ରନ୍ଦନର କାରଣ ଜିଜ୍ଞାସା କରିଛି । ପିତା ଉତ୍ତର ଦେଇଛନ୍ତି ଆକାଶରେ ଯେପରି ମେଘଖଣ୍ଡମାନ ମିଳାଇଯାଉଛି, ଠିକ୍ ସେହିପରି କଛୁଦିନ ତଳେ ତାଙ୍କର ଆଦରଣୀୟା କନ୍ୟାର ମୃତ୍ୟୁ ହୋଇଛି ।

କନ୍ୟା ହେମ ମୃତ୍ୟୁ ସମ୍ପର୍କରେ ଗୁଡ଼େଇ ଗୁଡ଼େଇ ବଭିନ୍ନ ପ୍ରଶ୍ନ କରଛୁ । ପିତା ତା'ର ଉତ୍ତରରେ ସୃଷ୍ଟି ସମ୍ପର୍କୀୟ ବଭିନ୍ନ ତତ୍ତ୍ୱକୁ ବଭିନ୍ନ ଉଦାହରଣ ମାଧ୍ୟମରେ ପ୍ରକାଶ କରଛନ୍ତି ।

ପ୍ରତଦନ ଅସଂଖ୍ୟ ମଣିଷ ଓ ଅନ୍ୟାନ୍ୟ ପ୍ରାଣୀ ମରୁଛନ୍ତି । ହୁଏତ ସମସ୍ତଙ୍କ ପାଇଁ ସମସ୍ତେ ଦୁଃଖ କରନ୍ତି ନାହିଁ । ଯାହାର ଯାହା ସହିତ ଘନିଷ୍ଠ ସମ୍ପର୍କ ଥାଏ, ସେହି କେବଳ ଅନ୍ୟର ମରଣରେ ଶୋକାଭିଭୂତ ହୁଏ । କାରଣ ମୃତ୍ୟୁ ପରେ ପୁନର୍ବାର ମିଳନର ଆଶା ନଥାଏ । ସ୍ୱର୍ଗ ଓ ନର୍କର ପରକଳ୍ପନା ମଣିଷର । ଏହାର ବାସ୍ତବତା କିଛୁ ନାହିଁ । ଜୀବର ମୃତ୍ୟୁ ପରେ ତା'ର ଶରୀର ପଞ୍ଚଭୂତରେ ବିଲୀନ ହୋଇଯାଏ । ବୈଜ୍ଞାନିକମାନେ ଯେଉଁ ପରମାଣୁର ସନ୍ଧାନ ପାଇଛନ୍ତି, ତାହାହିଁ ହେଉଛି ଚରମ ସତ୍ୟ । ସମସ୍ତଙ୍କର ବିଲୟ ଓ ମିଳନ ସେହି ପରମାଣୁରେ । ଆମର ପାରମ୍ପରିକ ଆତ୍ମା ଅମର ଓ ସେଥିପାଇଁ ମୃତ୍ୟୁପରର କ୍ରିୟାକର୍ମ ମୂଲ୍ୟହୀନ । ସେହି ପରମାଣୁରେ ସମସ୍ତେ ମିଳିତ ହୋଇ ବିଶ୍ୱର ସୃଷ୍ଟି ପ୍ରକ୍ରିୟାକୁ ପରିଚାଳିତ କରନ୍ତି । ଏହି ସମସ୍ତ ବିଶ୍ୱ ମଧ୍ୟ କେବେ ନଥିଲା । ହୁଏତ ଭବିଷ୍ୟତରେ ଏହି ସମଗ୍ର ପୃଥିବୀ ମଧ୍ୟ ଧ୍ୱଂସ ପାଇବ । ତେଣୁ ଜୀବନ ଓ ମୃତ୍ୟୁରେ ସୁଖ ବା ଦୁଃଖ ନକରି ମଣିଷ ତା'ର କର୍ତ୍ତବ୍ୟ କର୍ମ କରିଯିବା ହେଉଛି ଜୀବନର ସାର୍ଥକତା । ଏହିସବୁ ତାତ୍ତ୍ୱିକ ବ୍ୟାଖ୍ୟା ଶୁଣିବା ପରେ ଶିଶୁକନ୍ୟା ହେମ ପରଶେଷରେ ତା'ର ପିତାଙ୍କୁ ଆଶୀର୍ବାଦ ମାଗି କହୁଛି—"ବାବା, ଆଶୀର୍ବାଦ କର । ମୁଁ ଯେଉଁ କର୍ମ ନିମନ୍ତେ ଆସିଅଛି, ତାହା ସାଧନ କରେ । ପିତା ମାତାଙ୍କ ଉପରେ ଭକ୍ତି ଓ ସ୍ନେହ ରଖି ସେମାନଙ୍କ ମନକଷ୍ଟର କାରଣ ନହୋଇ ସେମାନଙ୍କ ଆଦେଶ ପାଳନରେ ତ୍ରୁଟି ନକରି ମହାସୁଖରେ ପ୍ରାଣତ୍ୟାଗ କରେ, ମୋର ଅଗ୍ରଗାମିନୀ ଭଗିନୀର ସହଯାତ୍ରୀ ହୁଏ । ସ୍ୱାର୍ଥତ୍ୟାଗ, ପରହିତ ସାଧନ, ଜଗତର ହିତକାମନା, ମହାସୁଖ, ମହାପୁଣ୍ୟ, ମହାସ୍ୱର୍ଗ ।"

ବିଷୟବସ୍ତୁ ଓ ପ୍ରକାଶଭଙ୍ଗୀ ଦୃଷ୍ଟିରୁ ଗଳ୍ପରେ ବହୁ ଅସ୍ୱାଭାବିକତା ରହିଛି । ଏହା ପ୍ରାୟ ପ୍ରବନ୍ଧଧର୍ମୀ ହୋଇ ପଡ଼ିଛି । ତଥାପି ପ୍ରକୃତିର ଦୃଶ୍ୟ ବର୍ଣ୍ଣନାରେ କାବ୍ୟିକ ଦୃଷ୍ଟିକୋଣ ସୁନ୍ଦରଭାବେ ପ୍ରତିଫଳିତ ।

## ମିଥ୍ୟା ଅଭିଯୋଗ

ଏହି କ୍ଷୁଦ୍ରଗଳ୍ପଟି ଉତ୍କଳ ସାହିତ୍ୟ ପତ୍ରିକାର ଆଷାଢ଼ ୧୩୨୭ ସାଲ (୧୯୨୧ ମସିହା) ସଂଖ୍ୟାରେ ପ୍ରକାଶିତ । କ୍ଷୁଦ୍ରଗଳ୍ପ ଭାବରେ ଲେଖାଟି ପ୍ରକାଶିତ ହୋଇଥିଲେ ହେଁ ଏଥିରେ ଗଳ୍ପର ବୈଶିଷ୍ଟ୍ୟ ବିଶେଷ ନାହିଁ; ଏକ ଦାର୍ଶନିକତତ୍ତ୍ୱକୁ କାହାଣୀରୂପ ଦେବା ପାଇଁ ଲେଖକ ପ୍ରୟାସ କରିଛନ୍ତି ମାତ୍ର । ଭାଷା ତଥା ଉପସ୍ଥାପନା

ଶୈଳୀ ପ୍ରବନ୍ଧାତ୍ମକ । ବିଭିନ୍ନ ଉପସ୍ଥିତିଦ୍ୱାରା ପ୍ରତିମାପୂଜାର ନିରର୍ଥକତା ଏଥିରେ ଦର୍ଶାଯାଇଛି । ଗଳ୍ପଟି ହେଉଛି—

ଜନ୍ମାଷ୍ଟମୀର ପ୍ରାତଃକାଳରୁ ପଣ୍ଡିତ ତାଙ୍କର ସ୍ନାନାଦି କର୍ମ ଶେଷକରି ଜଣକର ବଗିଚାରୁ ଫୁଲଗୁଡ଼ିଏ ତୋଳୁଛନ୍ତି । ଲେଖକ ନିଜେ ଏଥିରେ ପଣ୍ଡିତର ଭୂମିକାରେ ଅବତୀର୍ଣ୍ଣ । ଫୁଲଗୁଡ଼ିକର ଆକର୍ଷଣରେ ଆକୃଷ୍ଟ ହୋଇ ସେ ଅଧିକରୁ ଅଧିକ ଫୁଲ ତୋଳୁଛନ୍ତି ନିଜ ଆରାଧ୍ୟ ଦେବତା ଶ୍ରୀକୃଷ୍ଣଙ୍କୁ ସନ୍ଦର ସଦ୍ଭାବରେ ସଜ୍ଜିତ କରିବା ପାଇଁ । ଏତିକିବେଳେ ଅନ୍ୟଜଣେ ଭଦ୍ରଲୋକ ଉମାକାନ୍ତବାବୁ ଆସି ପଣ୍ଡିତଙ୍କୁ ଫୁଲର କିଏ ଛନ୍ତି କାହିଁକି ବୋଲି ପ୍ରଶ୍ନ କରିଛନ୍ତି । ପଣ୍ଡିତେ ରାଗିଯାଇ କାହିଁକି ତାଙ୍କୁ ଫୁଲର ବୋଲି କହିଲେ, ତାହା ଉମାକାନ୍ତଙ୍କୁ ପ୍ରଶ୍ନ କରିଛନ୍ତି । ବଗିଚାର ମାଲିକଙ୍କ ବିନାନୁମତିରେ ସେ ଫୁଲ ତୋଳିବା ଅର୍ଥ ହେଉଛି ଅନ୍ୟର ପଦାର୍ଥ ଅପହରଣ କରିବା ସହିତ ସମାନ ବୋଲି ଉମାକାନ୍ତ ବୁଝାଇଛନ୍ତି । ଏହାପରେ ଉମାକାନ୍ତ ତାଙ୍କୁ ମୂର୍ତ୍ତିପୂଜା ସମ୍ପର୍କରେ ବିଭିନ୍ନ ପ୍ରଶ୍ନ ପଚାରିଛନ୍ତି । ଯାହାଙ୍କୁ ଉପାସନା କରୁଛନ୍ତି, ପ୍ରକୃତରେ ତାହା ମାଧ୍ୟମରେ ମୁକ୍ତି ମିଳିବା ସମ୍ଭବ ନୁହେଁ । ଏହା ବିଭିନ୍ନ ଉଦାହରଣ ମାଧ୍ୟମରେ ଉମାକାନ୍ତ ବୁଝାଇଛନ୍ତି । ପ୍ରଥମତଃ ଧ୍ୟାନରେ ଯାହାଙ୍କର ବର୍ଣ୍ଣନା କରାଯାଏ ଏବଂ ଯେଉଁସବୁ ପଦାର୍ଥଦ୍ୱାରା ପୂଜା କରାଯାଉଛି ବୋଲି ସେହି ଧ୍ୟାନରେ ଉଲ୍ଲେଖ ଥାଏ । ପ୍ରକୃତରେ ସେହି ଦେବତାଙ୍କ ପୂଜା କରାଯାଇନଥାଏ କି ସେହିସବୁ ପଦାର୍ଥଦ୍ୱାରା ପୂଜା ମଧ୍ୟ କରାଯାଇନଥାଏ । ତେଣୁ ପ୍ରଥମରୁ ପୂଜା ନାମରେ ମିଥ୍ୟାଚାର କରାଯାଇ-ଥାଏ । ପୁନଶ୍ଚ ମନୁଷ୍ୟ, ପଶୁ, ପକ୍ଷୀ, କୀଟ, ପତଙ୍ଗ ଭଳି ଗଛର ମଧ୍ୟ ଜୀବନ ଅଛି । ତା'ର ଫୁଲ, କଢ଼ି ଇତ୍ୟାଦିକୁ ତୋଳିବା ଅର୍ଥ ଜୀବହତ୍ୟା, ଭ୍ରୁଣହତ୍ୟା ସହିତ ସମାନ । ଉମାକାନ୍ତଙ୍କ ଭାଷାରେ—"ମନୁଷ୍ୟ ହତ୍ୟା କଲେ ନରହତ୍ୟା, ଗୋଟିଏ ପଶୁ, କୀଟ ବା ପତଙ୍ଗ ହତ୍ୟା କଲେ ଜୀବହତ୍ୟା । ବୃକ୍ଷର ଜୀବନ ଅଛି । ଏଣୁ ଗୋଟିଏ ବୃକ୍ଷ ନାଶ କଲେ ଏକପ୍ରକାର ଜୀବହତ୍ୟା ।"

ଏହିଥିରୁ ପଣ୍ଡିତଙ୍କର ପ୍ରତିମାପୂଜା ସମ୍ପର୍କରେ ଜ୍ଞାନୋଦୟ ଘଟିଛି ।

ଗଳ୍ପଟି ଦୁଇଜଣଙ୍କ କଥୋପକଥନଦ୍ୱାରା ବିବୃତ । ଭାଷା ଶୁଦ୍ଧ ଓ ମାର୍ଜିତ । ବିଷୟବସ୍ତୁର ଗୁରୁତ୍ୱ ଥିଲେ ମଧ୍ୟ ଲେଖକ ଏହାକୁ କାହାଣୀଧର୍ମୀ କରିପାରି ନାହାନ୍ତି । ବିଶେଷତଃ, ଏହା ଲେଖକଙ୍କର ପ୍ରାରମ୍ଭିକ ଗଳ୍ପ ହୋଇଥିବାରୁ ସାର୍ଥକ ହୋଇପାରି ନାହିଁ ।

## ଅଭିନବ ନାତୁଣୀ

ଏହି ଖାଦ୍ୟଶାଳାର ଗଳ୍ପଟି ୧୩୩୭ ସାଲ ମାର୍ଗଶିର ସଂଖ୍ୟା 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ । ସମସାମୟିକ ଓଡ଼ିଆ ସମାଜରେ, ବିଶେଷତଃ ଓଡ଼ିଶାର

ବ୍ରାହ୍ମଣ ସମାଜରେ ବାଲ୍ୟ ବିଧବାଙ୍କ ଜୀବନର କରୁଣ କାହାଣୀ ଉପରେ ଗଳ୍ପଟି ଆଧାରିତ । ଏହା ବର୍ଣ୍ଣନାତ୍ମକ ଓ ଉଦ୍ଦେଶ୍ୟଧର୍ମୀ ଗଳ୍ପ ହୋଇଥିବାରୁ ନାଟକୀୟ ମହତ୍ତ୍ୱ ହ୍ରାସ ହୋଇଛି । ଭାଷା ଓ ଭାବ ଚରିତାନୁସାରୀ ହୋଇନାହିଁ । ଗୋଟିଏ ମହତ ଉଦ୍ଦେଶ୍ୟ ସାଧନର ଅଭିପ୍ରାୟ ଗଳ୍ପର କଳାତ୍ମକ ବିକାଶରେ ପ୍ରତିବନ୍ଧକ ହୋଇଛି । ତଥାପି ସମସାମୟିକ ପରିପ୍ରେକ୍ଷୀରେ ଗଳ୍ପର ସାହିତ୍ୟିକ ତଥା ସାମାଜିକ ମୂଲ୍ୟକୁ ଅସ୍ୱୀକାର କରିହେବ ନାହିଁ ।

ଗଳ୍ପର ନାୟକ ଭୂମିକାରେ ଲେଖକ ନିଜେ ଅବତୀର୍ଣ୍ଣ, ସ୍କୁଲ ଫାଇନାଲ୍ ପରୀକ୍ଷାରେ ପାଶ୍ କଲାପରେ ନାୟକ କଲେଜରେ ପଢ଼ିବା ପାଇଁ ସହରକୁ ଯାଏ । ବି. ଏ. ପାଶ୍ ନକଲା ପର୍ଯ୍ୟନ୍ତ ସ୍ୱଗ୍ରାମକୁ ଫେରିବନାହିଁ ବୋଲି ସ୍ଥିରକରି ଦୀର୍ଘ ଚାରିବର୍ଷ ବିଦେଶରେ ରହିଣି । ଚାରିବର୍ଷ ପରେ ଗ୍ରାମକୁ ପ୍ରତ୍ୟାବର୍ତ୍ତନ ଓ ପରେ ପରେ ନିକଟସ୍ଥ ଗୋବିନ୍ଦପୁର ଗ୍ରାମର ନିଜ ମାଉସୀ ଘରକୁ ବୁଲିବାକୁ ଯାଏ । ଗୋବିନ୍ଦପୁର ଗ୍ରାମ ମୁଣ୍ଡରେ ଜଣେ ବୃଦ୍ଧା ସହିତ ତାଙ୍କର ବାଲ୍ୟସଙ୍ଗିନୀ ଅହଲ୍ୟା ସହିତ ଦେଖାହୁଏ । ଏହି ଚାରିବର୍ଷ ମଧ୍ୟରେ ଅହଲ୍ୟାର ଯେଉଁ ଅକଳ୍ପନୀୟ ପରିବର୍ତ୍ତନ ହୋଇଯାଇଛି, ସେଥିପାଇଁ ସେ ତାକୁ ପ୍ରଥମେ ଚିହ୍ନିପାରି ନାହିଁ । ନବଯୌବନର ଦୀପ୍ତି ତା'ର ପ୍ରତିଟି ଅଙ୍ଗରେ ପରିସ୍ଫୁଟିତ ଏବଂ ତା' ଉପରେ ବୈଧବ୍ୟର କାରୁଣ୍ୟର ସ୍ତୂପ ଅହଲ୍ୟାର ରୂପକୁ ପରିବର୍ତ୍ତନ କରିଦେଇଛି । ବିଧବା ଅହଲ୍ୟାର ବିଷୟ ଚିନ୍ତା କରି କରି ନାୟକ ପହଞ୍ଚେ ତା'ର ମାଉସୀଙ୍କ ଘରେ । ସେଠାରେ ସାଦର ସମ୍ଭାଷଣ ତଥା ଖାଇବା ପିଇବା ଶେଷକରି ସେ ଯାଏ ଅହଲ୍ୟାକୁ ପୁନଶ୍ଚ ଦେଖା କରିବାପାଇଁ ତା' ଘରକୁ । ସେଠାରେ ସେ ଅହଲ୍ୟାର ସମବୟସୀ ଅନ୍ୟ ଏକ ବିଧବାକୁ ଦେଖେ । ଅହଲ୍ୟା ତା'ର ଅତୀତ କାହାଣୀ ଏବଂ ତା' ସହିତ ଥିବା ଅନ୍ୟ ବିଧବାର ଦୁଃଖଦ କାହାଣୀ ବର୍ଣ୍ଣନା କରେ । ବାଲ୍ୟାବସ୍ଥାରେ ପିତାଙ୍କ ମୃତ୍ୟୁ, ପିତାମହ ପରମାନନ୍ଦ ମିଶ୍ରଙ୍କର ଗୋହଣୀ ଦାନ ଫଳପ୍ରାପ୍ତିର ଆଶାରେ ନ'ବର୍ଷର ଅହଲ୍ୟାକୁ ବିବାହ ଦେବାର ବ୍ୟବସ୍ଥା, ମା'ର ମୃତ୍ୟୁ, ବିବାହ ବନ୍ଦ ଏବଂ ପରବର୍ଷ ବିବାହ, ଯୌବନପ୍ରାପ୍ତି, ଶ୍ୱଶୁର ଘରକୁ ଯିବାର ସ୍ଥିର, ଠିକ ପୂର୍ବରୁ ସ୍ୱାମୀଙ୍କ ମୃତ୍ୟୁଖବର ପ୍ରାପ୍ତି ଓ ଚିରଦିନ ପାଇଁ ପିତାଳୟରେ ବୈଧବ୍ୟ ଯନ୍ତ୍ରଣାଭୋଗର ଦୁର୍ଭାଗ୍ୟକୁ ବରଣ କରିବା ଇତ୍ୟାଦି ଘଟଣା ଅହଲ୍ୟା ବର୍ଣ୍ଣନା କରେ । ତା' ସହିତ କିଛିଦିନ ପରେ ପିତାମହୀଙ୍କର ମୃତ୍ୟୁ, ବୃଦ୍ଧ ପିତାମହଙ୍କର ଦ୍ୱିତୀୟ ବିବାହ ପ୍ରସ୍ତାବ, ଗୋପୀନାଥପୁରର ଆନନ୍ଦ ଶତପଥୀଙ୍କ ମଧ୍ୟସ୍ଥତାରେ ଦୁଇଶତ ଟଙ୍କା କନ୍ୟାସୁନା ଦେଇ ଗରିବ ବ୍ରାହ୍ମଣ ଯଦୁ ମିଶ୍ରଙ୍କ ତେରବର୍ଷୀୟା କନ୍ୟାର ପାଣିଗ୍ରହଣ, ନବବଧୂ ଗୃହପ୍ରବେଶ କରୁକରୁ ପିତାମହଙ୍କ ମୃତ୍ୟୁ ଏବଂ ବର୍ତ୍ତମାନ ଦୁଇ ସମବୟସ୍କା ବିଧବା ଯୁବତୀଙ୍କର ସାମାଜିକ ସ୍ଥିତି ବିଷୟରେ ହୃଦୟ ବିଦାରକ ଘଟଣାମାନ ଅହଲ୍ୟା ମୁଖରୁ ସେ ଶୁଣିଛି । ଗାଁର ଶ୍ରେଷ୍ଠଠାରୁ ବଡ଼ ପର୍ଯ୍ୟନ୍ତ, ପୁରୁଷଠାରୁ

ନାତି ପର୍ଯ୍ୟନ୍ତ ବିଧବାପ୍ରତି କପଟ ଏକପ୍ରକାର ଶ୍ୱାନଦୃଷ୍ଟି ନିକ୍ଷେପ କରନ୍ତି, ତାହାର ବିଭିନ୍ନ ଉଦାହରଣ କୌଶଳୀ ପ୍ରଦାନ କରିଛି ।

ଏହାପରେ ଗଳ୍ପର ନାୟକ ସେହି ଗ୍ରାମର ଅନ୍ୟତମ ବିଧବା ମହିଳା ସାବିତ୍ରୀ ଘରକୁ ଯାଇଛି । ସାବିତ୍ରୀ ତା'ର ଦୁଃଖଦ ଜୀବନର କାହାଣୀ କହିଛି । ସେ ବିଧବା ଏବଂ ପତିତା । କିନ୍ତୁ ଯେଉଁ ଦେଢ଼ଶୁର ତା'ର ଚରିତ୍ର ନଷ୍ଟ କରେ ସେ ସମାଜରେ ସମ୍ମାନ ସହ ବସବାସ କରନ୍ତି । ସେହିପରି ଅନ୍ୟକେତେକ ବିଧବା ପତିତାଙ୍କ ଦୁଃଖଦ କାହାଣୀ ସାବିତ୍ରୀ ବର୍ଣ୍ଣନା କରିଛି ।

ସନ୍ଧ୍ୟାରେ ସେହି ଗ୍ରାମର ପଣ୍ଡିତ ଓ ମାନ୍ୟଗଣ୍ୟ ବ୍ୟକ୍ତି ଲକ୍ଷ୍ମଣ ମିଶ୍ରଙ୍କ ସହିତ ନାୟକର ବିଧବା ସମସ୍ୟା ସମ୍ପର୍କରେ ଆଲୋଚନା ହୁଏ । ପଣ୍ଡିତ ମିଶ୍ର ବିଧବାଙ୍କ ପ୍ରତି ଘୃଣା ପ୍ରଦର୍ଶନପୂର୍ବକ ସତୀଦାହ ପ୍ରଥାକୁ ସମର୍ଥନ କରନ୍ତି । ନାୟକ ବିରକ୍ତିରେ ସେଠାରୁ ପ୍ରତ୍ୟାବର୍ତ୍ତନ କରେ । ରାତିରେ ଏଇସବୁ ବାଲ୍ୟବିଧବାଙ୍କ ଯନ୍ତ୍ରଣାମୟ ଜୀବନ ସମ୍ପର୍କରେ ଗମ୍ଭୀରଭାବେ ଚିନ୍ତା କରେ ଏବଂ ଆଧୁନିକ ଶିକ୍ଷାପ୍ରାପ୍ତ ଯୁବକଗଣ ଏ ଦିଗରେ ବିହିତ ପଦକ୍ଷେପ ନେବା ଉଚିତ ବୋଲି ମନେ ମନେ ସ୍ଥିର କରେ ।

ସମାଜରେ ବାଲ୍ୟବିବାହ, ବିଧବାମାନଙ୍କ ପ୍ରତି ନିର୍ଦ୍ଦୟ ବ୍ୟବହାର ଇତ୍ୟାଦି ପ୍ରତି ଗଭୀର ସମବେଦନା ଲେଖକଙ୍କର ଏହି ଗଳ୍ପରେ ସୁନ୍ଦରଭାବେ ପ୍ରତିଫଳିତ ।

## ଘନିଷ୍ଠତା କ୍ଷଣସ୍ଥାୟୀ

ଏହି ସୁଦୀର୍ଘ ଗଳ୍ପଟି ୧୯୩୫ ସାଲ ଭାଦ୍ର ସଂଖ୍ୟା 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ । ଏହାର ରଚନାଶୈଳୀ ଉନ୍ନତ କଳାତ୍ମକ । ଗୋଟିଏ ବିଧବାର ନିର୍ଯ୍ୟାତିତ ଜୀବନର କରୁଣ କାହାଣୀକୁ ଆଧାରକରି ଏହା ରଚିତ । ସୃଷ୍ଟିର ସବୁ ସ୍ତରରେ ଯେଉଁ ମୁହୂର୍ତ୍ତଟି ସବୁଠାରୁ ସୁନ୍ଦର, ଆତ୍ମୀୟତାପୂର୍ଣ୍ଣ ତାହା କେବେ ଦୀର୍ଘସ୍ଥାୟୀ ହୋଇନଥାଏ—ଏହାହିଁ ଏହି ଗଳ୍ପର କାରଣ । ଗଳ୍ପର ବିଷୟବିନ୍ୟାସ, ବର୍ଣ୍ଣନାଶୈଳୀ ସହିତ ସାମଞ୍ଜସ୍ୟ ରକ୍ଷାକରି ଭାଷାର ପ୍ରୟୋଗ ମଧ୍ୟ କରାଯାଇଛି । ପ୍ରାରମ୍ଭ ଓ ପରିସମାପ୍ତିରେ ଆକସ୍ମିକତା ତଥା ଦ୍ୱନ୍ଦ୍ୱାତ୍ମକ ପରିବେଶ ଚିତ୍ରଣରେ ଲେଖକ ସଫଳ ହୋଇଛନ୍ତି । ଗଳ୍ପଟି ସଂକ୍ଷେପରେ ହେଉଛି—

ସଦାନନ୍ଦ ଭାରତୀ ଜଣେ ଗୃହତ୍ୟାଗୀ ସନ୍ନ୍ୟାସୀ । ଗ୍ରାମ ବାହାରେ ପାହାଡ଼ ପର୍ବତ ଘେରା ଅରଣ୍ୟ ମଧ୍ୟରେ ତାଙ୍କର ଆଶ୍ରମ । ଆଧୁନିକ ଶିକ୍ଷାପ୍ରାପ୍ତ ଯୁବକ ଜୟନ୍ତ ତାଙ୍କର ଏକନିଷ୍ଠ ଭକ୍ତ । ଦିନେ ସନ୍ଧ୍ୟା ପୂର୍ବରୁ ଜୟନ୍ତ ଗ୍ରାମରୁ ଭାରତୀଙ୍କ ଆଶ୍ରମ ଅଭିମୁଖରେ ଯାତ୍ରା କରିଛି । ସୂର୍ଯ୍ୟାସ୍ତର ମନୋରମ ଦୃଶ୍ୟ ଜୟନ୍ତର ହୃଦୟକୁ ଆନନ୍ଦରେ ଉଦ୍‌ବେଳିତ କରିଛି । ଆକାଶର କଳାମେଘ ତଳେ ଅସ୍ତଗାମୀ ସୂର୍ଯ୍ୟଙ୍କର

ସୁନେଲି କିରଣ ଗୋଟିଏ ମୁହୂର୍ତ୍ତରେ ଜୟନ୍ତର ମନକୁ ଏପରି ଆକୃଷ୍ଟ କରିଛି, ଯେ ସେହି ଦୃଶ୍ୟକୁ ସେ ବାରମ୍ବାର ସ୍ମରଣ କରୁଛି । ଆଶ୍ରମ ବାହାରେ ଧ୍ୟାନମଗ୍ନ ସନ୍ନ୍ୟାସୀଙ୍କ ସମଗ୍ର ଶରୀର ଉପରେ ଏହି ସ୍ୱର୍ଣ୍ଣାଭ ସୂର୍ଯ୍ୟାସ୍ତର କିରଣ ପଡ଼ି ମୁହୂର୍ତ୍ତିକ ପାଇଁ ଅପରୂପ ସୌନ୍ଦର୍ଯ୍ୟ ପ୍ରକାଶ କରିଛି । ଜୟନ୍ତ ଦୂରରୁ ସେହି ଦୃଶ୍ୟକୁ ଅବଲୋକନ କରି ବିମୋହିତ ହୋଇଛି । ଧ୍ୟାନଭଗ୍ନ ପରେ ଜୟନ୍ତ ତା'ର ବିଗତ ମୁହୂର୍ତ୍ତର ଅଭୁଲା ସ୍ମୃତିକୁ ଆଧାରକରି ଗୁରୁଙ୍କୁ ପଚାରିଛି "ସନାତନତା କ୍ଷଣସ୍ଥାୟୀ" । ସଦାନନ୍ଦ ଭାରତୀ ଏହି କଥାର ପ୍ରକୃତ ଅର୍ଥ କିଛି ବୁଝିନପାରି ଜୟନ୍ତକୁ ଜିଜ୍ଞାସୁ ଦୃଷ୍ଟିରେ ଚାହିଁଛନ୍ତି । ଜୟନ୍ତ ସେହି ଦିନର ସ୍ମରଣୀୟ ଘଟଣାକୁ ବର୍ଣ୍ଣନା କରିଛି ଏବଂ କହିଛି ଯେ ଗୁରୁଙ୍କ ସହିତ ଏତେଦିନର ସମ୍ପର୍କ ମଧ୍ୟରେ ଆଜିର ସେହି ଅତୀତ ମୁହୂର୍ତ୍ତରେ ତା' ମନରେ ଗୁରୁଙ୍କ ପାଇଁ ଅସୀମ ଆକର୍ଷଣ ସୃଷ୍ଟି ହୋଇଥିଲା । ସେହିପରି ସନାତନତାର ପ୍ରତିଷ୍ଠା ଯଦି ଆତ୍ମା ଓ ପରମାତ୍ମା ମଧ୍ୟରେ ସମ୍ଭବ ହେବ, ତେବେ ଜୀବ ମୁକ୍ତି ପାଇବ ବୋଲି ସଦାନନ୍ଦ କହିଛନ୍ତି ଏବଂ ଜୟନ୍ତକୁ ଧ୍ୟାନମଗ୍ନ ହେବାକୁ ଆଦେଶ ଦେଇଛନ୍ତି । ଜୟନ୍ତ ଧ୍ୟାନମଗ୍ନ ହୋଇଛି । ଅଳ୍ପସମୟ ପରେ ତା'ର ଧ୍ୟାନଭଗ୍ନ ହୋଇଛି ଏବଂ ଗୁରୁ ଏହାର କାରଣ ପଚାରିବାରୁ ଜୟନ୍ତ ଏକ କରୁଣ ଚିତ୍କାର ଶୁଣିପାରିବା ପ୍ରକାଶ କରିଛି । କିନ୍ତୁ ମନକୁ ବାହାର ଘଟଣାରେ ବିଚଳିତ ନକରି ସ୍ଥିରଭାବରେ ଧ୍ୟାନମଗ୍ନ ହେବାକୁ ସଦାନନ୍ଦ ପରାମର୍ଶ ଦେଇଛନ୍ତି । କିନ୍ତୁ ବାରମ୍ବାର ସେହି କରୁଣ କ୍ରନ୍ଦନରେ ବ୍ୟସ୍ତ ହୋଇ ଜୟନ୍ତ ଧ୍ୟାନ ବନ୍ଦକରି ଜଙ୍ଗଲ ମଧ୍ୟକୁ ସେହି କ୍ରନ୍ଦନ ଧ୍ୱନିର ଅନ୍ୱେଷଣରେ ବାହାରିଯାଇଛି । ଘନ ଅନ୍ଧକାର, ପ୍ରବଳ ବର୍ଷା ଓ ଝଡ଼ ତୋଫାନ ମଧ୍ୟରେ ଜଙ୍ଗଲ ମଧ୍ୟରେ ଥିବା ଶ୍ମଶାନ ଆଡ଼କୁ ଅଗ୍ରସର ହୋଇଛି । ନିଜ ଶିଷ୍ୟର ଏପରି ଆକସ୍ମିକ ଅବାଧ୍ୟତାରେ ଆଶ୍ଚର୍ଯ୍ୟ ହୋଇ ସଦାନନ୍ଦ ସନ୍ତର୍ପଣରେ ତା'ର ପଥ ଅନୁସରଣ କରନ୍ତି । ବହୁ ଅନ୍ୱେଷଣ ପରେ ଜୟନ୍ତ ଜଣେ ମୂର୍ଚ୍ଛିତା ବିଧବାର ସନ୍ଧାନ ପାଆନ୍ତି । ବହୁ ସେବାଶୁଶ୍ରୂଷା ପରେ ସେହି ମୂର୍ଚ୍ଛିତା ବିଧବା ସଂଜ୍ଞା ଫେରି ପାଇଛି । ତା'ର ନାମ ରେବତୀ, ପାଖ ଗ୍ରାମ ଗୋବିନ୍ଦପୁରରେ ତା'ର ଘର । ରୋଗାକ୍ରାନ୍ତ ଦୁଇବର୍ଷର ପୁତ୍ର ପୂର୍ଣ୍ଣଚନ୍ଦ୍ରର ଆରୋଗ୍ୟ କାମନାକରି ନିକଟସ୍ଥ ଶିବମନ୍ଦିରକୁ ଆସିଥିବା କଥା ସେ ପ୍ରକାଶ କରିଛି । ଏହି ଅସହାୟ ମହିଳାକୁ ଏହିଭଳି ବିପଦପୂର୍ଣ୍ଣ ପରିବେଶରେ ଛାଡ଼ିଯିବା ପାଇଁ ଜୟନ୍ତ ନଚାହିଁ ରେବତୀକୁ ବହୁ ପ୍ରବୋଧନା ଦେଇ ଗୋବିନ୍ଦପୁରକୁ ତାକୁ ଛାଡ଼ିବାକୁ ଯାଇଛି । ସଦାନନ୍ଦ ଭାରତୀ ଗୋପନରେ ତାଙ୍କର ଅନୁସରଣ କରିଛନ୍ତି ।

ବାଟରେ ରେବତୀ ତା'ର ଜୀବନର କରୁଣ କାହାଣୀ କହିଛି । ସେ ସମୟର ପ୍ରଥାନୁସାରେ ରେବତୀର ବାଲ୍ୟବିବାହ, ସ୍ୱାମୀ ଘରକୁ ଯିବା ପୂର୍ବରୁ ବୈଧବ୍ୟଯନ୍ତ୍ରଣା, ପିତାମାତାଙ୍କର ଏକମାତ୍ର ସନ୍ତାନ ହେତୁ ମନସ୍ତାପ, ମାତାଙ୍କ ପରାମର୍ଶରେ ଗାଁର

ସ୍କୁଲ୍ ଶିକ୍ଷକଙ୍କ ସହିତ ରେବତୀର ବିବାହ, ଗାଁର ଅନ୍ୟମାନଙ୍କର କୋପଦୃଷ୍ଟି, ସମାଜଚ୍ୟୁତ, ମାତାପିତାଙ୍କର ମୃତ୍ୟୁ, କନ୍ୟା ମାଲତୀ ଓ ପୁତ୍ର ପୂର୍ଣ୍ଣଚନ୍ଦ୍ରର ଜନ୍ମ। ବିବାହର ଷଷ୍ଠ ବର୍ଷରେ ସ୍ୱାମୀଙ୍କର ମୃତ୍ୟୁ ପ୍ରଭୃତି ଘଟଣାର ବିସ୍ତୃତ ବିବରଣ ରେବତୀଠାରୁ ଶୁଣି ଜୟନ୍ତର ମନ ଦୁଃଖ ଓ ସମବେଦନାରେ ବିଗଳିତ ହୋଇଛି। ରୋଗଗ୍ରସ୍ତ ଦୁଇବର୍ଷର ପୁତ୍ର ପୂର୍ଣ୍ଣଚନ୍ଦ୍ରର ଆରୋଗ୍ୟ କାମନା ନିମନ୍ତେ ସେ ଶିବଙ୍କ ନିକଟରେ ନଡ଼ିଆ ବସାଇବା ପାଇଁ ଯାଇଥିଲି। କିନ୍ତୁ ଆକସ୍ମିକ ଏଭଳି ଦୁର୍ବିପାକ ସୃଷ୍ଟି ହେବ ବୋଲି ସେ ଆଶା କରିନଥିଲି ବୋଲି ରେବତୀ ପ୍ରକାଶ କରିଛି। ପୁତ୍ରର ଅବସ୍ଥା ସ୍ମରଣ କରି ସେ ବିଚଳିତ ହୋଇପଡ଼ିଛି।

କିଛି ସମୟ ପରେ ରେବତୀ ଓ ଜୟନ୍ତ ରେବତୀର ଘରେ ପହଞ୍ଚିବା, ପୂର୍ଣ୍ଣଚନ୍ଦ୍ରର ପ୍ରାଣବାୟୁ ଉଡ଼ିଯାଇଥିବା, ରେବତୀର କରୁଣ କ୍ରନ୍ଦନ, ଶବସତ୍କାର ପାଇଁ ଜୟନ୍ତର ପ୍ରସ୍ତୁତି ଓ ସେହି ସମୟରେ ସନ୍ନ୍ୟାସୀ ସଦାନନ୍ଦ ଭାରତୀଙ୍କର ଆବିର୍ଭାବ ଘଟଣାଗୁଡ଼ିକ ଅତି ନାଟକୀୟ ଭାବରେ ବର୍ଣ୍ଣିତ ହୋଇଛି। ଯେଉଁ ସଦାନନ୍ଦ ସଂସାରର ସମସ୍ତ ମାୟା ମମତାର ଦୂରରେ ରହି ପରମାତ୍ମାଙ୍କ ସହିତ ମିଳିତ ହେବା ପାଇଁ କଠୋର ତପସ୍ୟା କରୁଥିଲେ। ପୂର୍ଣ୍ଣଚନ୍ଦ୍ରର ମୃତ ଶରୀରକୁ ହୃଦୟରେ ଜାକି ସେ କିପରି ଏହି ସାଂସାରିକ ପରିବେଶ ମଧ୍ୟରେ ମୁକ୍ତିର ସ୍ୱାଦ ଆସ୍ୱାଦନ କଲେ, ତାହାର ସୁନ୍ଦର ଉପସ୍ଥାପନା ଗଳ୍ପର ପରିସମାପ୍ତିରେ କରାଯାଇଛି।

ତିନୋଟି ଅପରିଚିତ ପରସ୍ପର ଭିନ୍ନମୁଖୀ ଚରିତ୍ର ମଧ୍ୟରେ କ୍ଷଣସ୍ଥାୟୀ ଘନିଷ୍ଠତା କିପରି ଚିରସ୍ଥାୟୀ ସମ୍ପର୍କ ପ୍ରତିଷ୍ଠା କରିପାରିଛି, ତାହାହିଁ ଏହି ଗଳ୍ପର ଉପଜୀବ୍ୟ ବିଷୟ। ତାହା ସହିତ ବିଧବାମାନଙ୍କ ପ୍ରତି ସମାଜର ଯେଉଁ କ୍ରୂରଦୃଷ୍ଟି, ତାହାଦ୍ୱାରା କେତେ ଯେ ଜୀବନ ବିପନ୍ନ ଓ ବିପଦଗ୍ରସ୍ତ ହେଉଛି, ତାହାର ଉପସ୍ଥାପନା ମଧ୍ୟ ଏହି ଗଳ୍ପରେ କରାଯାଇଛି।

### ଗୌରୀ ଓ କାହ୍ନୁ

ଏହା ଏକ ପ୍ରେମମୂଳକ କାହାଣୀ। ୧୩୩୫ ସାଲ ମାର୍ଗଶୀର (୧୯୨୮)ର 'ଉତ୍କଳ ସାହିତ୍ୟ' ପତ୍ରିକାରେ ଏହା ପ୍ରକାଶିତ। ସମାଜର ତଳ ସ୍ତରରେ ମଧ୍ୟ କିପରି ଜାତିପ୍ରଥା ତୀବ୍ରଭାବରେ ପ୍ରଚଳିତ ଥିଲା, ତାହା ଏହି କାହାଣୀ ମାଧ୍ୟମରେ ସୂଚିତ ହୋଇଛି। ଗଳ୍ପର ଚରିତ୍ରଗୁଡ଼ିକ ଅବହେଳିତ ସମ୍ପ୍ରଦାୟ ଅନ୍ତର୍ଭୁକ୍ତ। ଏହି ଗଳ୍ପରୁ ଲେଖକଙ୍କର ସମାଜର ସବୁସ୍ତରର ଲୋକଙ୍କ ସହିତ ଜଡ଼ିତଥିବା ପ୍ରମାଣିତ ହୋଇଥାଏ। ଭାଷା ଓ ବର୍ଣ୍ଣନାଶୈଳୀ ଦୃଷ୍ଟିରୁ ଗଳ୍ପଟି ଉନ୍ନତ ଶିଳ୍ପକଳାର ପରିଚାୟକ। କାହାଣୀର ଘଟଣାକ୍ରମକୁ ଦୃଷ୍ଟିରେ ରଖି ଗଳ୍ପଟିକୁ ପାଞ୍ଚଗୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇଛି।

ମହାଗ୍ରାମର ପାହଡ଼ିଆ ସମ୍ପ୍ରଦାୟର ଯୁବତୀ ଗୌରୀ ଓ ନାରାଣ ବଣ୍ୟ ଫଳମୂଳ ସଂଗ୍ରହ ନିମନ୍ତେ ସୂର୍ଯ୍ୟୋଦୟ ପୂର୍ବରୁ ପାଖ ଜଙ୍ଗଲକୁ ଯାଆନ୍ତି । ଫଳ ସଂଗ୍ରହ ପରେ ଦୁଇଜଣ ଫେରି ବାଟରେ ଯୋଡ଼ଦହ ନିକଟରେ ବିଶ୍ରାମ ନିଅନ୍ତି । କିଛି ସମୟ ପରେ ନାରାଣ ଘରକୁ ଫେରିଯାଏ ଓ ଗୌରୀ ସଙ୍ଗରେ ଆଣିଥିବା ଖାଦ୍ୟ ଖାଇ ସେହିଠାରେ ବିଶ୍ରାମ ନିଏ । ଘଟଣାକ୍ରମେ ସେହି ଗ୍ରାମର ଗଉଡ଼ ଯୁବକ କାହ୍ନୁ ମଇଁଷି ଚରାଇବାପାଇଁ ସେଠାକୁ ଯାଏ ଓ ଗୌରୀ ସହିତ ସାକ୍ଷାତ ହୁଏ । ଦୁଇଜଣ ବାଲ୍ୟସାଥୀ ଓ ପରସ୍ପରକୁ ଆନ୍ତରିକତାରସହ ଭଲପାଆନ୍ତି । ଦୁଇଜଣ ବିବାହ ପାଇଁ କାହ୍ନୁ ପ୍ରସ୍ତାବ କରେ । ପ୍ରଥମେ ଗୌରୀ ଜାତିଗତ ପ୍ରତିବନ୍ଧକ ପାଇଁ ସମ୍ମତି ନଦେଲେ ମଧ୍ୟ କାହ୍ନୁର ଏକନିଷ୍ଠା ଫଳରେ ସେହିଠାରେ ଦୁହେଁ ବିବାହ କରନ୍ତି ।

କିଛିଦିନ ପରେ ଗୌରୀ ତା'ର ମାମୁଁଘର ବାସ୍ତବାହାଲକୁ ଚାଲିଯାଏ । ବର୍ଷାର ଆଗମନ ଫଳରେ କାହ୍ନୁ ମଧ୍ୟ ମଇଁଷିଗୁଡ଼ିକ ନେଇ ବାସ୍ତବାହାଲ ନିକଟସ୍ଥ ଏକ ଜଙ୍ଗଲରେ ଅସ୍ଥାୟୀଭାବେ ବସବାସ କରେ । ମାମୁଁଘରେ କିଛିକାଳ ରହିବା ପରେ ଗୌରୀ ନିଜ ଗ୍ରାମକୁ ଫେରେ । କିନ୍ତୁ ଗ୍ରାମକୁ ନଫେରି ଜଙ୍ଗଲରେ କାହ୍ନୁସହିତ ସ୍ୱାମୀ ସ୍ତ୍ରୀ ଭାବରେ ଜୀବନ ବିତାଏ । କାହ୍ନୁ ନିକଟରେ ତା'ର ଅନ୍ୟଜଣେ ପାଳିଆ (ସହକାରୀ) ଯଦୁ ଓ ତା'ସ୍ତ୍ରୀ ମଧ୍ୟ ରୁହନ୍ତି । ପାହଡ଼ିଆମାନେ ଗଉଡ଼ମାନଙ୍କଠାରୁ ନୀଚଜାତି ହୋଇଥିବାରୁ ଯଦୁର ସ୍ତ୍ରୀ ଦୁଃଖୀ ଗୌରୀ ଓ କାହ୍ନୁଙ୍କୁ ସର୍ବଦା ଘୃଣାଚକ୍ଷୁରେ ଦେଖେ । ଗୌରୀର ଗୋଟିଏ ପୁତ୍ରସନ୍ତାନ ହୁଏ । କିଛି ଦିନ ପରେ ଶିଶୁସନ୍ତାନ ରୋଗାକ୍ରାନ୍ତ ହୁଏ ଓ ଚିକିତ୍ସାପାଇଁ ଗୌରୀ ତାହାକୁ ନେଇ ତା' ଗାଁକୁ ଯାଏ । ସେଠାରେ ପୁତ୍ରସନ୍ତାନର ମୃତ୍ୟୁ ହୁଏ । ଗୌରୀର ଅନୁପସ୍ଥିତିରେ ଦୁଃଖୀ କାହ୍ନୁଙ୍କୁ ଅସ୍ପୃଶ୍ୟ ଭାବରେ ବ୍ୟବହାର ଦେଖାଏ । କାହ୍ନୁ ମନରେ ବେଳେବେଳେ ଅନୁଶୋଚନା ଆସେ । ଗୌରୀ ଫେରିବା ପରେ କାହ୍ନୁ ନିଜ ଜାତିର ମହାସଭା ଉତ୍ସବ ଦେଖିବା ପାଇଁ ଗାଁକୁ ଯାଏ । ସେଠାରେ ବାପ, ଭାଇଙ୍କ ପ୍ରରୋଚନାରେ ଜାତିରେ ମିଶିବା ପାଇଁ ପ୍ରସ୍ତୁତ ହୁଏ । ଏ ଖବର ଗୌରୀ ଶୁଣେ । ସେ ନିଜ ଭାଇ ନନ୍ଦ ଓ ମା' ସହିତ ନିର୍ଦ୍ଦିଷ୍ଟ ଦିନରେ ସେହି ମହାସଭାରେ ଆସି ପହଞ୍ଚେ । କାହ୍ନୁଙ୍କୁ ଜାତିରେ ମିଶାଇଲେ ତାକୁ ମଧ୍ୟ ଜାତିରେ ମିଶାଇବା ପାଇଁ ଗୌରୀ ଜିଦ୍‌ଧରେ । ନନ୍ଦ ଏଥିପାଇଁ ପୁରୋହିତ ତଥା କାହ୍ନୁକୁ ପ୍ରାଣରେ ମାରିଦେବାକୁ ଧମକଦିଏ । ଶେଷରେ କାହ୍ନୁ ଜାତିରେ ମିଶିପାରେ ନାହିଁ ଓ ଗୌରୀସହ ଏକତ୍ର ରହେ ।

ଗଳ୍ପଟି ମିଳନାତ୍ମକ । କିନ୍ତୁ ଘଟଣାକ୍ରମର ଗତିଶୀଳତା ଏଥିରେ ନାହିଁ । ନୀଚଜାତିର ଚରିତ୍ର ହୋଇଥିଲେ ମଧ୍ୟ ତାଙ୍କ ମୁହଁରେ ଯେଉଁସବୁ ଯୁକ୍ତି ଉପସ୍ଥାପନ କରାଯାଇଛି । ତାହା ଅସ୍ୱାଭାବିକ ହୋଇଛି । ଜାତିପ୍ରଥା ଉପରେ ନିଜର ଲେଖକଙ୍କ ମଧ୍ୟ

ପର କଣଦେଇପାରେ ଏବଂ ଅର୍ଥ ଖର୍ଚ୍ଚ କରି ଦୁଇକାର୍ତ ପାଇବାର ସେଉଁ ପ୍ରହସନ, ତାହା ଏହି ଗଳ୍ପମାଧ୍ୟମରେ ବର୍ଣ୍ଣିଯାଇଛି ।

## ଭିନ୍ନ ଗତ ଓ ଭିନ୍ନ ମତ

ଏହା ଏକ କ୍ଷୁଦ୍ରାୟତନବିଶିଷ୍ଟ ଗଳ୍ପ । ୧୬୬୬ ସାଲ ପୌଷ ସଂଖ୍ୟା (୧୯୬୮) 'ଉତ୍କଳ ସାହିତ୍ୟ'ରେ ଏହା ପ୍ରକାଶିତ । ଘଟଣାଟି ଘଟିଛି କଲିକତାର କର୍ଣ୍ଣୱାଲିସ୍ ଷ୍ଟ୍ରିଟ୍ ୨୪ ନମ୍ବର ଭବନର ଫୁଟ୍‌ପାଥ ଉପର ଗ୍ଯାଲେରି ତଳେ । ଅନ୍ୟତ୍ର ଯିବା ଉଦ୍ଦେଶ୍ୟରେ 'ଟ୍ରାମ' ପାଇଁ କେତେଜଣ ଯାତ୍ରୀ ପ୍ରତୀକ୍ଷମାଣ । ସେମାନଙ୍କ ମଧ୍ୟରେ ଜଣେ ଧଳା ପେଣ୍ଟଲୁନ୍ ଚପକନ ପିନ୍ଧା ଓକିଲ, ଜଣେ ଧଳା ପଟ୍ଟବସ୍ତ୍ର ପିନ୍ଧା ପଣ୍ଡିତ ସହିତ ବନ୍ୟନ୍ତ ଲମ୍ବଲମ୍ବିତ କେଶଧାରୀ କଥକ ଠାକୁର ଉଲ୍ଲେଖଯୋଗ୍ୟ । ଗ୍ୟାଲେରିର କାନ୍ଥକୁ ଅଣ୍ଡାଳି ଅଣ୍ଡାଳି ଯାଉଥିବା ଅନ୍ଧ ଜୀର୍ଣ୍ଣ ଭିକ୍ଷୁଣୀର "ବାବା ଧର୍ମଘରର ପୁଅ, ଏକ୍‌ଟି ପଏସା ଦାଓ" କରୁଣ ଧ୍ୱନି ସମସ୍ତଙ୍କ ଆକୃଷ୍ଟ କରିଛି । ସମସ୍ତଙ୍କ ଦୃଷ୍ଟି ଭିକ୍ଷୁଣୀ ଉପରେ । ଏହି ସମୟରେ ଗୋଟିଏ ବୁଲାଗାଈ ଆସି ସେଠାରେ ଠିଆହୋଇ ମଳମୂତ୍ର ତ୍ୟାଗ କରିବା ଫଳରେ ଯାତ୍ରୀମାନଙ୍କ ପୋଷାକପତ୍ରରେ ତାହାର ଛିଟା ପଡ଼ିଛି । ଓକିଲ ଜଣକ ବିରକ୍ତିରେ 'ସର୍ବନାଶ' ବୋଲି ଚିତ୍କାର କରିଛନ୍ତି । ଏହାଶୁଣି ପଟ୍ଟବସ୍ତ୍ରଧାରୀ ଠାକୁର ଜଣକ କିନ୍ତୁ ଗୋମୂତ୍ରର ପ୍ରଶଂସା କରି ଏକ ଶ୍ଳୋକ ଆବୃତ୍ତି କରିଛନ୍ତି । ଓକିଲଙ୍କୁ ଉଦ୍ଦେଶ୍ୟ କରି ସେ କହିଛନ୍ତି—"ଯସ୍ୟାଃ ଷୁରନ୍ୟାସ ପବିତ୍ର ପାଂଶୁଃ । ଅର୍ଥାତ୍ ଯାହାର ପଦଧୂଳି ଲାଗିଲେ ମନୁଷ୍ୟ ଶରୀର ପବିତ୍ର ହୁଏ, ଶ୍ରୀର ଉଦୟ ହୁଏ, ତାହାର ଟିକିଏ ମୂତ୍ର ଲାଗିବାରୁ ଆପଣ ସର୍ବନାଶ ବୋଲି କହିଲେ । ଆହା !"

କିନ୍ତୁ ପୋଷାକର ଅପରିଚ୍ଛନ୍ନତାରେ ଯେ କଚେରୀ ଯିବା ସମ୍ଭବ ନୁହେଁ, ସେକଥା ଠାକୁର ଜଣକ ବୁଝିବେ କିପରି ?

ଗଳ୍ପଟି ଏଇଠାରେ ଶେଷ । ଆଖିରେ ନ ପଡ଼ିଲାଭଳି ଅତି କ୍ଷୁଦ୍ର ଘଟଣାଟିଏ । କିନ୍ତୁ ଲେଖକ ଏହା ମଧ୍ୟରୁ ମଣିଷ ମଣିଷ ଭିତରେ ବାହ୍ୟିର ଓ ଆଭ୍ୟନ୍ତର ପାର୍ଥକ୍ୟକୁ ଅତି ସୁନ୍ଦରଭାବେ ଉପସ୍ଥାପିତ କରିଛନ୍ତି ।

## ଅତିଥି ସତ୍କାର

ସଭ୍ୟତାର ଆଲୋକଠାରୁ ବହୁଦୂରରେ ବାସକରୁଥିବା ଗୋଟିଏ ଆଦିବାସୀ ପରିବାରର ଅକୃତ୍ରିମ ଆତିଥ୍ୟକୁ ଆଧାର କରି ରଚିତ ଏହି ଗଳ୍ପଟି ୧୬୬୬ ସାଲ ଚୈତ୍ର ସଂଖ୍ୟା (୧୯୬୧) 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ । ଆଦିବାସୀ-ମାନଙ୍କର ସରଳ ଜୀବନଯାପନ, ଅମାୟିକ ବ୍ୟବହାର, ନିର୍ଭୀକତା ଇତ୍ୟାଦି ଏହି ଗଳ୍ପରେ ବର୍ଣ୍ଣିତ । ଗଳ୍ପର ବିଷୟ ବିନ୍ୟାସ ତଥା ଚରିତ୍ରାଙ୍କନରେ ଗତାନୁଗତିକତା

ସୁସ୍ପଷ୍ଟ । ଚରିତ୍ରମାନଙ୍କ ମଧ୍ୟରେ କଥୋପକଥନ ମାଧ୍ୟମରେ ଗଳ୍ପର ଘଟଣା ବିନ୍ୟସ୍ତ । ଆଦିବାସୀମାନଙ୍କ ଜୀବନଚର୍ଯ୍ୟା ସମ୍ପର୍କରେ ଲେଖକ ନିବିଡ଼ଭାବେ ପରିଚିତଥିବା ଗଳ୍ପରୁ ସୂଚିତ ହୁଏ । ଗଳ୍ପର ବିଷୟବସ୍ତୁ ହେଲା—

ବଣ ପାହାଡ଼ଘେରା ଆଦିବାସୀ ଅଧ୍ୟୁଷିତ ଗାଁ ନଳବନ୍ଧ । ଗ୍ରେଷ୍ଟିଆ ଗାଁ । ଘର ସଂଖ୍ୟା ଦୁଇ । ଅଧିବାସୀ ଛ' କମ୍ବା ସାତ । ଜୀବିକା ବଣରୁ ଫଳମୂଳ ସଂଗ୍ରହ ଓ ଶିକାର । ସଭ୍ୟତାର ସ୍ପର୍ଶ ସେମାନଙ୍କଠାରେ ନାହିଁ । ଡେଣ୍ଣ କପଟ, ମିଥ୍ୟାସ୍ପୃହା ଇତ୍ୟାଦି ଠାରୁ ବହୁଦୂରରେ ସେମାନେ ରହିଛନ୍ତି ।

ପାଖ ଗାଁର ଶିକ୍ଷିତ ଜଣେ ଷୋଡ଼ଶ ଯୁବକ ସାଙ୍ଗୀମାନଙ୍କ ସହ ଶିକାରକୁ ଯାଇ ଘଟଣାଚକ୍ରରେ ଏକା ସେହି ଗ୍ରାମରେ ଉପସ୍ଥିତ ହୁଏ । ଲୁଦା ନାମକ କୋନ୍ଧ ଜାତିର ଜଣେ ଲୋକ ସହିତ ତା'ର ସାକ୍ଷାତ ହୁଏ । ଅତି ଆଦର ଯତ୍ନରେ ଲୁଦା ତା'ର ଯୁବତୀକନ୍ୟା ଜଲ୍ଲିଙ୍ଗି ଷୋଡ଼ଶ ଯୁବକକୁ ଫଳମୂଳ ଖୁଆନ୍ତି । ବିଶ୍ରାମ ପାଇଁ ଘରଟିଏ ଯୋଗାଇଦେଇ ତା'ର ସମସ୍ତପ୍ରକାର ଯତ୍ନ ନିଅନ୍ତି । ସେହି ଆଦିବାସୀ ଯୁବତୀ ତଥା ତା'ର ପିତାର ଆତ୍ମୀୟତା ଯୁବକ ମନରେ ଗଭୀର ରେଖାପାତ କରେ । ସନ୍ଧ୍ୟାପୂର୍ବରୁ ସ୍ୱଗ୍ରାମକୁ ଫେରେ । ଆସିଲାବେଳେ ଜଲ୍ଲିଙ୍ଗିକୁ କହି ଆସେ, ପୁଣି ତା'ର ବିବାହ ଦିନ ଆସି ସେ ଭୋଜି ଖାଇବ ।

ଏହି କାହାଣୀ ମଧ୍ୟରେ ନିଷ୍କପଟ ଆଦିବାସୀମାନଙ୍କ ଜୀବନର ମହାନୀୟତା ପ୍ରତିପାଦିତ । ସେମାନଙ୍କ ନିକଟରେ ଶିକ୍ଷା, ଦୀକ୍ଷା, ଧନସମ୍ପଦ ନାହିଁ କିମ୍ବା ଆଧୁନିକ ସଭ୍ୟତା ସମ୍ପର୍କରେ ସେମାନେ ସଚେତନ ନୁହେଁ, ତଥାପି ମଣିଷକୁ କିପରି ଭଲପାଇ ହୁଏ, ତାହା ସେମାନଙ୍କଠାରେ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ ।

**ବିବାହ ଭୋଜି**

ଅପେକ୍ଷାକୃତ ଦୀର୍ଘ ଏହି ଗଳ୍ପଟି 'ଉତ୍କଳ ସାହିତ୍ୟ' ପତ୍ରିକାର କାର୍ତ୍ତିକ ୧୩୩୩ ସାଲ ଓ ମାର୍ଗଶିର ୧୩୩୪ ସାଲ ସଂଖ୍ୟା ଦୁଇଟିରେ ଦୁଇଭାଗରେ ପ୍ରକାଶିତ । ଏହି ଗଳ୍ପଟି ପୂର୍ବ ଆଲୋଚିତ 'ଅତିଥି ସତ୍କାର' ଗଳ୍ପର ଏକ ସମ୍ପ୍ରସାରିତ ଅଂଶବିଶେଷ । ଯେଉଁ ଶିକ୍ଷିତ ଗ୍ରାମ୍ୟ ଯୁବକଟି କୋନ୍ଧ ରମଣୀ 'ଜଲ୍ଲିଙ୍ଗି'କୁ ତା'ର ବିବାହ ଭୋଜି ଖାଇବାକୁ ଆସିବ ବୋଲି କହି ଆସିଥିଲା, ସେହି ଯୁବକ ଗୃହରେ 'ଜଲ୍ଲିଙ୍ଗି'ର ଉପସ୍ଥିତିରେ ଗଳ୍ପର ଆରମ୍ଭ ହୋଇଛି । ସଦ୍ୟ ବିବାହିତା ଜଲ୍ଲିଙ୍ଗି ତା'ର ଏହି ଶିକ୍ଷିତ ସଭ୍ୟ ଭାଇକୁ ଭୋଜି ଖାଇବାକୁ ଯିବାପାଇଁ ଅନୁରୋଧ କରିବାକୁ ଆସିଛି । ଅଶିକ୍ଷିତ ଏହି କୋନ୍ଧ ରମଣୀର ଅନାବିଳ ସ୍ନେହରେ ଅଭିଭୂତ ହୋଇ ଭୋଜି ଖାଇବାକୁ ନଳବନ୍ଧ ଗ୍ରାମକୁ ଯାଇଛି । ସେଠାରେ ରାତ୍ରିଯାପନ, ଅନ୍ୟାନ୍ୟ କୋନ୍ଧ

ସମ୍ପ୍ରଦାୟ ଲୋକଙ୍କ ସହିତ ଆଳାପ, ପରଦିନ ଶିକାର କରିବା, ଜିଲଙ୍ଗିର ସ୍ୱାମୀ ବିରଷାର ଶକ୍ତି ଓ ସାମର୍ଥ୍ୟର ପ୍ରଶଂସା ଇତ୍ୟାଦିର ଦୀର୍ଘ ବର୍ଣ୍ଣନା ଗଳ୍ପର ପ୍ରଥମ ଭାଗରେ ସନ୍ନିବେଶିତ । ଗଳ୍ପର ଦ୍ୱିତୀୟ ଭାଗରେ ଲୁନ୍ଦା କୋଲ୍ହର ଆଧୁନିକ ସମାଜ ଉପରେ ନିଜସ୍ୱ ମନ୍ତବ୍ୟ ପ୍ରଦାନରେ ଯୁବକଟିର ଚିନ୍ତା ଓ ଜିଲଙ୍ଗି, ବିରଷା ଇତ୍ୟାଦିଙ୍କଠାରୁ ବିଦାୟ ନେଇ ଗ୍ରାମକୁ ପ୍ରତ୍ୟାବର୍ତ୍ତନ ଆଦି ପ୍ରସଙ୍ଗ ବର୍ଣ୍ଣିତ ।

ଦୁଇଟି ଭିନ୍ନ ସାମାଜିକ ପରିବେଶରେ ବଢ଼ିଥିବା ଯୁବକଯୁବତୀଙ୍କ ମଧ୍ୟରେ ପବିତ୍ର ଭ୍ରାତୃତ୍ୱବୋଧକୁ ଏଥିରେ ପ୍ରାଧାନ୍ୟ ଦିଆଯାଇଛି । ତା' ସହିତ ଆଦିବାସୀ ଅଶିକ୍ଷିତ ହେଲେ ମଧ୍ୟ, ସେମାନଙ୍କର ଆତ୍ମପ୍ରତ୍ୟୟ, ସରଳତା ଓ ସମ୍ମାନବୋଧ ଆଧୁନିକ ସଭ୍ୟସମାଜର ଲୋକଙ୍କଠାରୁ ବହୁ ଅଧିକ ବୋଲି ଲେଖକ ଦର୍ଶାଇଛନ୍ତି । ଗଳ୍ପଟିର ଉପସ୍ଥାପନା ଶୈଳୀ ସୁନ୍ଦର । ପ୍ରାକୃତିକ ଦୃଶ୍ୟର ବର୍ଣ୍ଣନା ସ୍ୱାଭାବିକ । ଆଦିବାସୀଙ୍କ ଜୀବନଚର୍ଯ୍ୟା ସମ୍ପର୍କରେ ଲେଖକଙ୍କର ପ୍ରତ୍ୟକ୍ଷଜ୍ଞାନର ସୂଚନା ଗଳ୍ପ ମଧ୍ୟରୁ ମିଳିଥାଏ । ଗଳ୍ପଟିର ସ୍ଥାନ ବିଶେଷରେ ଲେଖକଙ୍କ ବର୍ଣ୍ଣନାଶୈଳୀ ବେଶ୍ ରସାତ୍ମକ ହୋଇପାରିଛି । ସଦ୍ୟବିବାହିତା ଆଦିବାସୀ ରମଣୀ ଜିଲଙ୍ଗିର ବେଶ୍ ବର୍ଣ୍ଣନା କବିଙ୍କ ଭାଷାରେ—
"ପରିଧାନ ଖଣ୍ଡେ ନୂତନ ହଳଦିଆ ଗୋଟା ଶାଢ଼ୀ । ବର୍ଣ୍ଣ ଶ୍ୟାମ, ନାକରେ କୌଣସି ଅଳଙ୍କାର ନାହିଁ । ଦୁଇ କାନରେ ଦୁଇଗୋଟି ତର୍‌ପତ୍ର । ଦୁଇ କାନର ଉପରଅଂଶରୁ ଦୁଇଗୋଟା ବାଳୀଗୁଣ୍ଠରୁ ଦୁଇକେରା ରୁପା ଶିକୁଳି କାନ ତଳଯାଏ ଓହଳିଥିଲି । ଅଳଙ୍କାର ମଧ୍ୟରେ ଏତିକି । ଗଳାରେ ଅନେକଗୁଡ଼ାଏ କାଚମାଳୀ । ମୁଣ୍ଡରେ ଓଢ଼ଣା ନାହିଁ । ବିଶେଷ ପରିପାଟୀ ସହିତ କେଶବିନ୍ୟାସ କରିନଥିଲି । ମାଙ୍ଗ ମଧ୍ୟରେ ଘୃତ କମ୍ବା ତେଲ ମିଶ୍ରିତ ଦୀର୍ଘ ସିନ୍ଦୂର ଗାର । ସିନ୍ଦୂର ଗାରଟି ପ୍ରକୃତ ସୌନ୍ଦର୍ଯ୍ୟରସନା ଭୁଲି, ଏଣୁ ଯୁବତୀର ମୁଖଶ୍ରୀକୁ ମ୍ଳାନ କରୁଥିଲି ବୋଲିଯିବ । ଏହି ଗାରଟି ନଥିଲେ ତା'ର ପ୍ରକୃତ ଉଦ୍ଦାମ ଯୌବନରେ ପାବତୀୟ ରମଣୀର ପ୍ରକୃତ ଶୋଭା ଫୁଟି ଉଠୁଥା'ନ୍ତା ।"

ଦୁଃଖ, ଦୈନ୍ୟ, ଅଭାବ ଅନାଟନ ମଧ୍ୟରେ ଜୀବନ ଅତିବାହିତ କରୁଥିଲେ ମଧ୍ୟ ଏହି ଆଦିବାସୀମାନେ ଯେ ବାସ୍ତବ ଜୀବନର ସ୍ୱାଦ ଆସ୍ୱାଦନ କରନ୍ତି, ଏହାହିଁ ଏହି ଲେଖାର ଅନ୍ତର୍ବାଣୀ ।

## ସନ୍ତାନ ସ୍ନେହ

ଏହା ଏକ ସୁଦୀର୍ଘ କାହାଣୀକୁ ଆଧାରକରି ରଚିତ ବିରାଟ କ୍ଷୁଦ୍ରଗଳ୍ପ । 'ଉତ୍କଳ ସାହିତ୍ୟ' ପତ୍ରିକାର ଚାରିଗୋଟି ସଂଖ୍ୟାରେ ଏହା ଧାରାବାହିକଭାବେ ପ୍ରକାଶିତ । ୧୯୩୬ ସାଲ ବୈଶାଖ ସଂଖ୍ୟାରେ ଆରମ୍ଭ ହୋଇ ଆଶ୍ୱିନ ସଂଖ୍ୟାରେ ଶେଷ ହୋଇଛି । ବିଷୟବସ୍ତୁର ଜଟିଳତା ନଥିଲେ ମଧ୍ୟ ଲେଖକଙ୍କ ବର୍ଣ୍ଣନାବାହୁଲ୍ୟ

ଗଳ୍ପଟିକୁ ତାହା ସ୍ୱତନ୍ତ୍ରବିଶିଷ୍ଟ କରିଛି । ବ୍ରାହ୍ମଣ ସମାଜରେ ସେସମୟରେ ପ୍ରଚଳିତ ଥିବା ବାଲ୍ୟବିବାହ, ବୃଦ୍ଧବିବାହ ଭଳି କୁପ୍ରଥା ଓ ବାଲ୍ୟବୈଧବ୍ୟଜନିତ ଚରିତ୍ରିକ ସ୍ଖଳନ, ଭ୍ରୂଣହତ୍ୟା, ପୁରୁଷର କଳଙ୍କିତ ଆଚରଣ, ନାରୀମାନଙ୍କପ୍ରତି ସମାଜର ନିଷ୍ଠୁର ବ୍ୟବହାର ଇତ୍ୟାଦିକୁ କାହାଣୀ ମାଧ୍ୟମରେ ସମାଲୋଚନା କରାଯାଇଛି । ଗୋଟିଏ ବିଧବା ବ୍ରାହ୍ମଣ ଯୁବତୀର ଅବୈଧ ସନ୍ତାନ ସ୍ନେହ ଏହି ଗଳ୍ପରେ କେନ୍ଦ୍ରବିନ୍ଦୁ ହୋଇଥିବାରୁ ଗଳ୍ପର ନାମକରଣ 'ସନ୍ତାନ ସ୍ନେହ' କରାଯାଇଅଛି । ଗଳ୍ପଟିର ବିଷୟବସ୍ତୁ ହେଉଛି—

ପ୍ରବଳ ବର୍ଷା, ବାତ୍ୟା, ବଜ୍ରପାତ ଯୋଗୁଁ ଜଙ୍ଗଲକୁ ଶିକାର ଉଦ୍ଦେଶ୍ୟରେ ଯାଇଥିବା ଦୁଇଜଣ ଯୁବକ ଜଙ୍ଗଲ ମଧ୍ୟରେ ଗୋଟିଏ ବୃକ୍ଷ ମୂଳରେ ଆଶ୍ରୟ ନିଅନ୍ତି । ରାତିର ଅନ୍ଧକାର ବୃଦ୍ଧିପାଇବା ସଙ୍ଗେ ସଙ୍ଗେ ପ୍ରକୃତିର ଏହି ତାଣ୍ଡବଲୀଳା ଅଧିକରୁ ଅଧିକ ହୁଏ । ଅନ୍ଧକାର ମଧ୍ୟରେ ପାଖ ବୃକ୍ଷମୂଳରୁ କେହି ଜଣକର କାତରୋକ୍ତି ଆକସ୍ମିକ ଭାବରେ ସେମାନଙ୍କୁ ଶୁଣାଯାଏ । ଏମାନଙ୍କର ଆହ୍ୱାନକ୍ରମେ ଗୋଟିଏ ବିଧବା ଯୁବତୀ ବର୍ଷାରେ ଭିଜି ଭିଜି ଆସି ତାଙ୍କ ନିକଟରେ ପହଞ୍ଚେ । ସାମାନ୍ୟ ବାକ୍ୟ ବିନିମୟ ପରେ ନିରାଶ୍ରୟା ଏହି ଯୁବତୀପ୍ରତି ସେ ଦୁଇଜଣଙ୍କର ସମବେଦନା ଜାତହୁଏ । ବର୍ଷାର ପ୍ରକୋପ ବନ୍ଦହେବା ପରେ ଦୁଇଜଣ ଯୁବକ ସେହି ବିଧବା ସହିତ ନିଜଗ୍ରାମକୁ ଆସନ୍ତି । ରାତିରେ ଯୁବତୀଟି ଏକ ନିଭୃତ ସ୍ଥାନରେ ଆଶ୍ରୟ ନିଏ । ପରଦିନ ଏକ ନିଭୃତ ସ୍ଥାନରେ ସେ ନିଜର ଜୀବନ କାହାଣୀ ଦୁଇ ଯୁବକଙ୍କୁ ଶୁଣାଇବ ବୋଲି ପ୍ରତିଶ୍ରୁତି ଦିଏ । ପରଦିନ ପ୍ରଭାତରୁ ସେ ଯୁବତୀ ନିକଟସ୍ଥ ଜଙ୍ଗଲକୁ ଯାଏ । ଯୁବକ ଦୁଇଜଣ ପରେ ସେଠାରେ ପହଞ୍ଚନ୍ତି । ଯୁବତୀ ତାର ଅତୀତର ଘଟଣାବଳୀ ବର୍ଣ୍ଣନା କରେ । ସେ ଏକ ଦରିଦ୍ର ବ୍ରାହ୍ମଣର ଏକମାତ୍ର ସନ୍ତାନ । ତା'ର ସୌନ୍ଦର୍ଯ୍ୟ ଯୋଗୁଁ ପାଖ ଗ୍ରାମର ଜଣେ ଧନୀ ପ୍ରତିପତ୍ତିଶାଳୀ ବ୍ରାହ୍ମଣ ସନ୍ତାନ ସହିତ ତା'ର ବିବାହ ହୁଏ । ବୟଃପ୍ରାପ୍ତି ପୂର୍ବରୁ ସେ ଶ୍ୱଶୁରଗୃହକୁ ଯାଏ । ଦେବରଙ୍କର ଗୋଟିଏ ଅପ୍ରାପ୍ତବୟସ୍କା କନ୍ୟା ସହିତ ବିବାହ ଓ ପରେ ପରେ ଶ୍ୱଶୁର ଓ ସ୍ୱାମୀଙ୍କର ମୃତ୍ୟୁ । କିଛିଦିନପରେ ଦେବରଙ୍କ ସ୍ତ୍ରୀର ମୃତ୍ୟୁ । ଘଟଣାଚକ୍ରରେ ଦେବର ସହିତ ପାପପ୍ରଣୟରେ ଅନ୍ତଃସତ୍ତ୍ୱା ହୋଇପଡ଼େ । ନିଜର ସୁନ୍ଦର ବ୍ୟବହାର ଯୋଗୁଁ ଶାଶୁ କିମ୍ବା ଗ୍ରାମର ଅନ୍ୟ କେହି ତାକୁ ସନ୍ଦେହ କରନ୍ତିନାହିଁ । କିନ୍ତୁ ସାମାଜିକ ମର୍ଯ୍ୟାଦାକୁ ଭୟକରି ଦେବର ନିକଟରେ ଏକଥା ପ୍ରକାଶ କରେ । ଭ୍ରୂଣହତ୍ୟା କରି କଳଙ୍କ ବିଲୋପ ପାଇଁ ଦେବର ପ୍ରସ୍ତୁତ ହୁଅନ୍ତି । ବିଧବାଟି ତା'ର ଗର୍ଭସ୍ଥ ଶିଶୁର ପ୍ରାଣରକ୍ଷା ପାଇଁ ବ୍ୟାକୁଳ ହୁଏ । ଶାଶୁ, ଦେବରଙ୍କ ସହିତ ତୀର୍ଥଯାତ୍ରା କରେ । ପଥମଧ୍ୟରୁ ରେଳରୁ ଏକା ଅବତରଣ କରି ଆତ୍ମଗୋପନ କରିବା ଆଶାରେ ପଳାୟନ କରେ ଏବଂ ଘଟଣାକ୍ରମେ ଏହି ଦୁଇ ଯୁବକଙ୍କ ସହିତ ସାକ୍ଷାତ ହୁଏ ।

ଏହାପରେ ବିଧବା ରମଣୀଟି ଯୁବକ ଦୁଇଜଣଙ୍କୁ ଭାଇ ବୋଲି ସମ୍ବୋଧନକରି ତା'ର ଗର୍ଭସ୍ଥ ଶିଶୁର ପ୍ରାଣରକ୍ଷା ନିମନ୍ତେ ଆକୁଳ ଅନୁନୟ ବିନୟ କରେ ଓ ଯୁବକ ଦୁଇଜଣ ସେମାନଙ୍କ ସମ୍ମତି ଜ୍ଞାପନରେ ଗଳ୍ପର ପରିସମାପ୍ତି ହୋଇଛି ।

ଗଳ୍ପ ମଧ୍ୟରେ ବହୁ ଚରିତ୍ରର ସମାବେଶ ହୋଇଥିଲେ ମଧ୍ୟ ସେମାନଙ୍କର ନାମୋଲ୍ଲେଖ ନାହିଁ । ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ଏହି ଗଳ୍ପର ଭିତ୍ତି । ସେହି ଉଦ୍ଦେଶ୍ୟକୁ ଉଲ୍ଲେଖ କରି ଲେଖକ କହିଛନ୍ତି—"ଉପାୟହୀନା ସ୍ତ୍ରୀ ଜାତି ପୁରୁଷର ପ୍ରତାରଣାରେ, ପ୍ରଲୋଭନରେ ପଡ଼ି ଆତ୍ମମର୍ଯ୍ୟାଦା ଭୁଲିଯାଆନ୍ତି । ସ୍ତ୍ରୀର କିଛି ମନେକରିବ ନାହିଁ, ବାସ୍ତବରେ ପୁରୁଷ ପ୍ରତାରକ । ସ୍ତ୍ରୀର ସର୍ବନାଶ କରିବାକୁ ପୁରୁଷର ତିଳେମାତ୍ର ପାପଭୟ ନାହିଁ । ସୁଖର ପ୍ରଲୋଭନ ଦେଖାଇ ପାପପଙ୍କକୁ ଗଡ଼ାଇଦିଅନ୍ତି । କେବଳ ତାହା ନୁହେଁ, ନିଜେ ନିରାପଦ ସ୍ଥାନରେ ଦଣ୍ଡାୟମାନ ରହି ସ୍ତ୍ରୀର ପାପମାତ୍ରାର ବୃଦ୍ଧି କରୁଥାନ୍ତି । ଘଟଣାକ୍ରମେ ନିଜେ କଳଙ୍କିତ ହେବାର ଆଶଙ୍କା ପାଇବା ମାତ୍ରକେ ତାହା ଉପରେ ଆହୁରି ପାପ ଓ କଳଙ୍କର ଭାର ନେଇ ନିମଜ୍ଜିତ କରନ୍ତି । ପୁରୁଷ ପାପଶୂନ୍ୟ ଓ ନିଷ୍କଳଙ୍କ, ସ୍ତ୍ରୀ କଳଙ୍କିନୀ ।"

## ମୁକ୍ତିର ଉପାୟ

ପକ୍ଷୀଟିଏ ହେଉ କିମ୍ବା ମଣିଷଟିଏ ହେଉ, ପରାଧୀନ ବା ପିଞ୍ଜରାବଦ୍ଧ ହେଲେ ସମସ୍ତ ସୁଖସୌଭାଗ୍ୟରୁ ବଞ୍ଚିତ ହୁଏ ଏବଂ ମୁକ୍ତି ପାଇଁ ତା'ର ପ୍ରାଣ ବ୍ୟାକୁଳ ହେଉଥାଏ— ଏହି ଶାଶ୍ୱତ ସତ୍ୟକୁ ଭିତ୍ତି କରି 'ମୁକ୍ତିର ଉପାୟ' କ୍ଷୁଦ୍ରଗଳ୍ପଟି 'ଉତ୍କଳ ସାହିତ୍ୟ' ପତ୍ରିକାର ୧୩୩୪ ସାଲ ଶ୍ରାବଣ ସଂଖ୍ୟାରେ ପ୍ରକାଶିତ । ସାଖିଟିର ନାଁ ସ୍ନେହରେ ରଖାଯାଇଛି ରାଧା । ରାଧାର ଯତ୍ନପାଇଁ ଗୃହକର୍ତ୍ତ୍ରୀ ଓ ତାଙ୍କ କନ୍ୟା ସୁମତି ସର୍ବଦା ତତ୍ପର । ଦିନେ ସକାଳୁ ଗୃହକର୍ତ୍ତ୍ରୀ ରାଧାକୁ ସ୍ନାନ କରାଇ ତା'ର ପିଞ୍ଜରାରେ କିଛି ଖାଦ୍ୟ ପଦାର୍ଥ ଦେଇ ପିଞ୍ଜରାଟିକୁ ଅଗଣାରେ ଥିବା ଆମ୍ବ ଗଛର ଡାଳରେ ଝୁଲାଇ ଦେଇଛନ୍ତି । ବହୁଦିନରୁ ଅଭ୍ୟସ୍ତ ରାଧାକୃଷ୍ଣ, ରାଧାକୃଷ୍ଣ ବୋଲି ସାଖି ରବ କରୁଛି । ଏହିସମୟରେ କେତେଗୁଡ଼ାଏ ସାଖି ଆସି ପାଖ ଜାମୁଗଛରେ ବସି ଜାମୁ ଖାଇବାକୁ ଲାଗନ୍ତି । ପିଞ୍ଜରାବଦ୍ଧ ସାଖିକୁ ଦେଖି ସେମାନେ ପିଞ୍ଜରା ନିକଟକୁ ଆସନ୍ତି । ସେମାନେ ତାଙ୍କ ରବଦ୍ୱାରା ରାଧାକୁ କିଛି କହିବାକୁ ଚେଷ୍ଟା କରନ୍ତି । କିନ୍ତୁ ରାଧା ଅତି ଶୈଶବ ଅବସ୍ଥାରୁ ପୋଷା ହୋଇଥିବାରୁ ସେ ରବ କିଛି ବୁଝିପାରେ ନାହିଁ । ତେଣୁ ସେ ସୁମତି, ସୁମତି ବୋଲି ଡାକ ଦିଏ । ସୁମତି ପହଞ୍ଚିବାକ୍ଷଣି ଅନ୍ୟ ସାଖି ଗୁଡ଼ିକ ଉଡ଼ିଉଡ଼ି ଆକାଶରେ ଅଦୃଶ୍ୟ ହୁଅନ୍ତି । ଏହା ଦେଖି ମୁକ୍ତି ପାଇଁ ରାଧାର ପ୍ରାଣ ଆକୁଳ ହୁଏ ଏବଂ ସେ ପିଞ୍ଜରାରେ ଥଣ୍ଟ ପିଟି କ୍ଷତ ବିକ୍ଷତ ହୁଏ । ସୁମତି ଏହି କଥା ତା'ର ମାଙ୍କୁ କୁହେ । ପିତାଙ୍କ ବିନାନୁମତିରେ ରାଧାକୁ ପିଞ୍ଜରା ମୁକ୍ତ କରିବା

ସମ୍ଭବ ନୁହେଁ ବୋଲି ମାତା ବୁଝନ୍ତି । ସୁମଙ୍ଗର ଭାଇ ଦମନକ ଅନ୍ୟ ସାପମାନଙ୍କୁ ମାରିଦେବାର ଧମକ ଦିଏ । କିନ୍ତୁ ଗୃହକର୍ତ୍ତ୍ରୀ ସ୍ୱାଧୀନତାର ତାତ୍ପର୍ଯ୍ୟ ବୁଝାଇ ରାଧାକୁ ଅରଣ୍ୟରେ ମୁକ୍ତ ଦେବାକୁ ସ୍ୱୀକୃତ ଦାନରେ ଗଳ୍ପର ପରିସମାପ୍ତି ।

ସାପ 'ରାଧା'କୁ ଲେଖକ ପ୍ରତୀକରୂପେ ଏଠାରେ ଗ୍ରହଣ କରିଛନ୍ତି । ପରାଧୀନ ଭାରତରେ ଯିଏ ଯେତେ ସୁଖରେ ଥିଲେ ମଧ୍ୟ ସେମାନଙ୍କ ନିକଟରେ ବାସ୍ତବ ସୁଖ ନାହିଁ ଏବଂ ସ୍ୱାଧୀନତା ହିଁ ପ୍ରତ୍ୟେକ ଜୀବର ଜନ୍ମଗତ ଅଧିକାର ବୋଲି ଏଠାରେ ଦର୍ଶାଇଛନ୍ତି ।

**ମେଷବଳି**

୧୩୪୦ ସାଲ ପୌଷ ସଂଖ୍ୟା 'ଉତ୍କଳ ସାହିତ୍ୟ' ପତ୍ରିକାରେ ଏହା ପ୍ରକାଶିତ । ଜୀବଜଗତ ପ୍ରତି ଲେଖକଙ୍କର ଗଭୀର ସମ୍ବେଦନଶୀଳତା ଏହି ଗଳ୍ପରୁ ପ୍ରତିଫଳିତ ହୁଏ । ପରମ୍ପରାଗତ କୁସଂସ୍କାର ଓ ଅନ୍ଧବିଶ୍ୱାସଦ୍ୱାରା ପ୍ରଭାବିତ ମଣିଷ କେତେ ନିର୍ଦ୍ଦୟ, ବର୍ବର ଓ ସଂସ୍କାରମୁକ୍ତ ଶିଶୁର ହୃଦୟ କିପରି ସ୍ନେହସିକ୍ତ ତାହା ଏହି ଗଳ୍ପର ଭିତ୍ତି ।

ଶରତ କାଳର ନିର୍ମଳ ଆକାଶରେ ସ୍ନିଗ୍ଧ ଜ୍ୟୋତ୍ସ୍ନା ସମସ୍ତଙ୍କର ଆକର୍ଷଣୀୟ । ଶିଶୁଠାରୁ ବୃଦ୍ଧ ପର୍ଯ୍ୟନ୍ତ ଏହି ସମୟର ଚନ୍ଦ୍ରକୁ ଦେଖି ସବୁ ଆହ୍ଲାଦିତ ହୁଅନ୍ତି । ଦଶହରା ପର୍ବ ପାଖେଇ ଆସିଛି । ସନ୍ଧ୍ୟାରେ ସମସ୍ତେ ପରିଷ୍କାର ଚନ୍ଦ୍ରକିରଣର ସୌନ୍ଦର୍ଯ୍ୟ ଉପଭୋଗ କରି ଆନନ୍ଦିତ । କିନ୍ତୁ ରୂପେଇ ମା' ମନଦୁଃଖରେ ବାରଣ୍ଡା ଉପରେ ଶୋଇଛି । ସ୍ୱରବର୍ଷ ତଳର ମୃତ ତା'ର ପୁଅ ସନ୍ତାନ ଆଜି ମନେ ପଡୁଛି । ଏହି ସମୟରେ ତା'ର ବାରବର୍ଷର କନ୍ୟା ବୁଲବୁଲି ଫେରିଛି । ରୂପେଇ ଗୋଟିଏ ମେଷଛୁଆକୁ ଅତି ଯତ୍ନରେ ପାଳିଥାଏ । ତା' ମାଆ କହୁଛି ଯେ ଜମିଦାର ଏହି ମେଷଛୁଆଟିକୁ ନେଇ ଦଶହରାରେ ଦେବୀଙ୍କ ନିକଟରେ ବଳି ଦେବେ ବୋଲି ସ୍ଥିର କରିଛନ୍ତି । ଆଜି ସେଥିପାଇଁ ପିଆଦା ଆସିଥିଲା ବୋଲି କହୁଛି । ଯେତେ ପ୍ରକାର ବୁଝାବୁଝି କଲେ ମଧ୍ୟ ରୂପେଇ ଏ ପ୍ରସ୍ତାବରେ ରାଜି ହୋଇନାହିଁ । ପରଦିନ ପିଆଦା ଆସି ରୂପେଇ ଓ ମେଷଛୁଆକୁ ଦେଓ୍ୱାନଙ୍କ ନିକଟକୁ ନେଇଛି । ବାହାରେ ଏମାନଙ୍କୁ ଅପେକ୍ଷା କରାଇ ପିଆଦା ଗୃହ ମଧ୍ୟକୁ ଯିବା ଅବସରରେ ରୂପେଇ ନିଜ ହାତର ବୁଢାଙ୍ଗୁଳିକୁ କାଟି ରକ୍ତ ମେଷଛୁଆର କାନରେ ବୋଳି ଦେଇଛି । ଦେବାନ ଆସି ଦେଖନ୍ତି ଯେ ମେଷ ଛୁଆ କାନରେ ରକ୍ତ । ତେଣୁ ଏହା ବଳିଯୋଗ୍ୟ ନୁହେଁ ବୋଲି କହିଭଲିଯାଆନ୍ତି । ମେଷ ଛୁଆଟିର ଜୀବନ ରକ୍ଷା ହୁଏ ।

ଏହି ଗଳ୍ପ ମଧ୍ୟରେ ହିନ୍ଦୁ ଧର୍ମରେ ପ୍ରଚଳିତ ବଳି ପ୍ରଥାର ନିର୍ବୋଧତା ନିର୍ଦ୍ଦୟତା ବିଷୟରେ ଆଲୋକପାତ କରାଯାଇଛି । ମଣିଷ ସଂସ୍କାରମୁକ୍ତ ନହେଲେ

ଏଭଳି ବିବେଚିତ କର୍ମର ଅବସାନ ହେବନାହିଁ । ଜୀବ ପ୍ରତି ଦୟା ସମସ୍ତଙ୍କର ଧ୍ୟେୟ ହେବା ଉଚିତ ବୋଲି ଲେଖକ ଏଠାରେ କହିଛନ୍ତି । ଗଳ୍ପଟି କ୍ଷୁଦ୍ର । କିନ୍ତୁ ଉପସ୍ଥାପନାଶୈଳୀ ହୃଦୟସ୍ପର୍ଶୀ ।

ଆଲୋଚିତ ଗଳ୍ପଗୁଡ଼ିକ ବ୍ୟତୀତ 'ଅଶ୍ରୁଧାରା' ନାମକ ଏକ ମନସ୍ତାତ୍ତ୍ୱିକ ଗଳ୍ପ ୧୯୩୫ ମସିହାରେ 'ଶରତର ମୃତ୍ୟୁକାଳୀନ ଚିନ୍ତା' ନାମକ ଗଳ୍ପ । ଜଣେ ବିନମ୍ରତ୍ୱ ମିସ୍ତ୍ରୀ 'ଶୁଦ୍ଧୁ'ର ଯନ୍ତ୍ରଣାକାତର ଚିନ୍ତାର ଆଧାରରେ ୧୯୩୮ ମସିହାରେ ଓ ଗୋଟିଏ ଯୁବକର ପାପାଭିଳାଷର ଶିକାର ହୋଇ ଗଙ୍ଗାର ଜଳରେ ଆତ୍ମନିମଗ୍ନ କରିଥିବା ଏକ ଯୁବତୀର କାହାଣୀକୁ ନେଇ 'ଏହା କି ଆତ୍ମହତ୍ୟା' ? ଶୀର୍ଷକ ଗଳ୍ପ ୧୯୩୫ ମସିହାରେ ଉତ୍କଳ ସାହିତ୍ୟରେ ପ୍ରକାଶିତ । ୧୯୩୫ ମସିହାରେ 'ସହକାର' ପତ୍ରିକାରେ ଆଉ ଗୋଟିଏ ଗଳ୍ପ 'ଭିକ୍ଷୁକ ସଭା' ପ୍ରକାଶିତ । ଏହିସବୁ ଗଳ୍ପ ଉପଲବ୍ଧ ନହେବାରୁ ସେ ସମ୍ପର୍କରେ ବିଶେଷ ଆଲୋଚନା ସମ୍ଭବ ହେଉ ନାହିଁ ।

ସମସାମୟିକ ଅନ୍ୟାନ୍ୟ ପତ୍ରପତ୍ରିକାରେ ତାଙ୍କର କେତେକ ଗଳ୍ପ ପ୍ରକାଶିତ ହୋଇଥିବା ମଧ୍ୟ ଅନୁମାନ କରାଯାଏ । କିନ୍ତୁ ସେ ସମ୍ପର୍କରେ ନିର୍ଦ୍ଦିଷ୍ଟ ସୂଚନା ମଧ୍ୟ ଉପଲବ୍ଧ ନୁହେଁ ।

□

# ଜଲନ୍ଧର ଦେବଙ୍କ ଅନ୍ୟାନ୍ୟ ରଚନା

**କବିତା**

ଆଧୁନିକ ଓଡ଼ିଆ ପ୍ରବନ୍ଧ ସାହିତ୍ୟର ବିକାଶ କ୍ଷେତ୍ରରେ ଜଲନ୍ଧର ଦେବଙ୍କ ଅବଦାନ ଯଥାର୍ଥ ସ୍ୱୀକୃତି ପାଇଛି ବୋଲି କହିହେବ ନାହିଁ । ତାହାଙ୍କ ଗଳ୍ପଗୁଡ଼ିକର ସଂଖ୍ୟା ସ୍ୱଳ୍ପ ନହେଲେ ବି ଓଡ଼ିଆ କଥାସାହିତ୍ୟର ଆଲୋଚନା କ୍ଷେତ୍ରରେ ସେ ସମ୍ପୂର୍ଣ୍ଣ ଅବହେଳିତ । ଏହାର କାରଣ ବହୁବିଧ । ବିଳମ୍ବରେ ହେଲେହେଁ ତାହାଙ୍କଦ୍ୱାରା ରଚିତ କେତେକ ପ୍ରବନ୍ଧକୁ ଏକତ୍ରିତ କରି ଓଡ଼ିଶା ସାହିତ୍ୟ ଏକାଡେମୀ 'ଜଲନ୍ଧର ରଚନାବଳୀ' ୧ମ ଭାଗ (ସଂକଳନ : ଶ୍ରୀ ରାମଚନ୍ଦ୍ର ବେହେରା) ପ୍ରକାଶ କରିବା ଯୋଗୁଁ ଆଲୋଚକମାନଙ୍କ ଆଲୋଚନାର ପରିସରକୁ ସେ ଆସିପାରିଛନ୍ତି । ତାଙ୍କର ବହୁମୁଖୀ ସାହିତ୍ୟିକ ପ୍ରତିଭାର ପର୍ଯ୍ୟାଲୋଚନା ପାଇଁ ଏହା ବହୁଭାବରେ ସାହାଯ୍ୟ କରିବ ।

ତାହାଙ୍କ ରଚନାବଳୀର ସାମଗ୍ରିକ ମୂଲ୍ୟାୟନରେ ପ୍ରଧାନ ଅନ୍ତରାୟ ହେଉଛି ଏଗୁଡ଼ିକ ବିକ୍ଷିପ୍ତଭାବେ ସମସାମୟିକ ପତ୍ରପତ୍ରିକାଗୁଡ଼ିକରେ ପ୍ରକାଶିତ । 'ଡାଏରିର କିୟଦଂଶ'କୁ ଛାଡ଼ିଦେଲେ ଅନ୍ୟ କୌଣସି ରଚନା ପୁସ୍ତକାକାରରେ ପ୍ରକାଶିତ ହୋଇନଥିଲା । ଫଳତଃ ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣେତାଗଣ ଓ ଆଲୋଚକମାନେ ଏହି ସମସ୍ତ ବିକ୍ଷିପ୍ତ ରଚନାର ସାମଗ୍ରିକ ମୂଲ୍ୟାୟନ କରିବା କଷ୍ଟସାଧ୍ୟ ଥିଲା । କେବଳ କେଉଁଠି କେମିତି ତାହାଙ୍କ ବିଷୟରେ କେବଳ ସଂକ୍ଷିପ୍ତ ସୂଚନା ପ୍ରଦାନ କରାଯାଇଥିଲା । ସାହିତ୍ୟ ସାଧନାକୁ ଜଲନ୍ଧର ଦେବ ଏକ ଜାତୀୟ କର୍ତ୍ତବ୍ୟଭାବେ ଗ୍ରହଣ କରିନେଇଥିଲେ । ଆଧୁନିକ ଯୁଗର ପ୍ରାରମ୍ଭରେ ଅନ୍ୟାନ୍ୟ ସାହିତ୍ୟିକମାନଙ୍କ ଭଳି ସେ ଉତ୍ସର୍ଗୀକୃତ ସାହିତ୍ୟସାଧକ ଥିଲେ । ମାତୃଭାଷା ଓ ସାହିତ୍ୟର ବିକାଶ ନିମନ୍ତେ ସେ ଐକାନ୍ତିକ ପ୍ରୟାସ କରିଥିଲେ । ତେଣୁ ସାହିତ୍ୟର ବିଭିନ୍ନ ବିଭାବରେ ଲେଖନୀ ଚାଳନା କରିବାକୁ କୁଣ୍ଠାବୋଧ କରିନଥିଲେ, ଯଦିଓ ପ୍ରବନ୍ଧ ଓ କ୍ଷୁଦ୍ରଗଳ୍ପ ବ୍ୟତୀତ ଅନ୍ୟାନ୍ୟ ବିଭାଗରେ ତାଙ୍କର ସଫଳତା ଉଲ୍ଲେଖଯୋଗ୍ୟ ନୁହେଁ ।

ଜଲନ୍ଧର ଦେବ ଥିଲେ ବାସ୍ତବବାଦୀ । ତେଣୁ କବିର କଳ୍ପନା ବିଳାସିତା ତାଙ୍କ ପାଖରେ ପ୍ରାପ୍ୟ ନଥିଲା । ଯୁଗ ପ୍ରଭାବରୁ ସେ ସ୍ୱଳ୍ପ କେତୋଟି କବିତା ରଚନା

କରିଥିଲେ ଏବଂ ତାହା ଉତ୍କଳ ସାହିତ୍ୟର ପୃଷ୍ଠାମଣ୍ଡନ କରିଥିଲା । ସେହି ସ୍ୱଳ୍ପସଂଖ୍ୟକ କବିତା ମଧ୍ୟରେ ମଧ୍ୟ ଜ୍ଞାନଗର୍ଭକ ଚିନ୍ତା ଓ ଚେତନାର ଅଭିବ୍ୟକ୍ତି ଘଟିଥିଲା । ୧୯୩୪ ମସିହାରେ ପ୍ରକାଶିତ 'ମେଘସମ୍ଭବନା' ଏକ ନୀତିଗର୍ଭକ କବିତା ।

ପ୍ରାକୃତିକ ସୌନ୍ଦର୍ଯ୍ୟ ପରିପୂର୍ଣ୍ଣ ବାମଣ୍ଡା ରାଜ୍ୟର ରାଜଧାନୀ ଦେବଗଡ଼ ବାସ୍ତବରେ ଦେବନିର୍ମିତ ଗଡ଼ କହିଲେ ଅତ୍ୟୁକ୍ତି ହେବନାହିଁ । ଏହାର ଚତୁଃପାର୍ଶ୍ୱରେ ସୁଉଚ୍ଚ ପର୍ବତମାଳା ପ୍ରାକୃତିକ ପ୍ରାଚୀରରୂପେ ଦଣ୍ଡାୟମାନ । ଘଞ୍ଚଅରଣ୍ୟ ପରିପୂର୍ଣ୍ଣ ଏହି ପାର୍ବତ୍ୟ ଅଞ୍ଚଳରେ ବର୍ଷାଋତୁର ପ୍ରାକୃତିକ ସୌନ୍ଦର୍ଯ୍ୟ ଅତୀବ ଆକର୍ଷଣୀୟ । ଖଣ୍ଡ ଖଣ୍ଡ ବର୍ଷଣମୁଖର ମେଘ ଯେତେବେଳେ ପାହାଡ଼ର ଶୃଙ୍ଗରୁ ଶୃଙ୍ଗକୁ ଘୂରିବୁଲେ, ସେସମୟର ଦୃଶ୍ୟ ଯେକୌଣସି ଦର୍ଶକର ମନରେ ଅସୀମ ଆନନ୍ଦ ସୃଷ୍ଟି କରିବାକୁ ସକ୍ଷମ । ଏହି ପ୍ରାକୃତିକ ଦୃଶ୍ୟକୁ ଭିତ୍ତିକରି ସେ 'ମେଘ ସମ୍ଭବନା' କବିତାକୁ ରଚନା କରିଥିଲେ ମଧ୍ୟ ସାମାଜିକ କୁସଂସ୍କାର ସମ୍ପର୍କରେ ସତତ ସଚେତନ ଜଳନ୍ଧର ବନ୍ଧୁ ସାଂସାରିକ ସଂସ୍କାରକୁ ଏହି କବିତାରେ ସଂଯୋଗ କରିଥିଲେ ।

ସାଂସାରିକ ମଣିଷର ମନ ବଡ଼ ବିଚିତ୍ର । ସ୍ନେହ, ମମତା, ପ୍ରେମ ଇତ୍ୟାଦି ଦେବଗୁଣ ସହିତ ଈର୍ଷା, ଘୃଣା ଓ ପରଶ୍ରୀକାତରତା ଭଳି ଆସୁରିକ ପ୍ରବୃତ୍ତି ନେଇ ମଣିଷ ଏ ସଂସାରରେ ଚଳ ପ୍ରଚଳ କରିଥାଏ । କବି ଏହି କବିତାରେ ମେଘକୁ ପ୍ରତୀକଭାବେ ଗ୍ରହଣ କରି ସଂସାରର ସ୍ୱାଭାବିକ ଧର୍ମକୁ ଏଥିରେ ପ୍ରତିଫଳିତ କରିଛନ୍ତି । ଯଥା:—

> ଅସ୍ୱଚ୍ଛ ହୃଦସମାନ ମ୍ଳାନ ଆକାଶ,
> ଦେଖି ପାପୀ ମାନସେ ପାଏ ଉଲ୍ଲାସ ।।
> କ୍ଷଣାରେ ସୁଧାକର ସୁଧାକିରଣ ।
> ନଳିଭ ବିରସ ତୋ କୁମୁଦାନନ ।।
> ଜଣକ ସନ୍ତାପରେ ଜଣକ ପ୍ରୀତି ।
> ଅଦ୍ଭୁତ ନୁହେଁ କି ଗୋ ସଂସାର ରୀତି ।।

କବିତାଟି ନୀତିଗର୍ଭକ ହୋଇଥିଲେ ମଧ୍ୟ ଏହାର ସାବଲୀଳ ଶୈଳୀ ବେଶ୍ ଉପଭୋଗ୍ୟ । ଭାଷାର ଲାଳିତ୍ୟ ସହିତ, ବର୍ଣ୍ଣନାର ବୈଚିତ୍ର୍ୟ ଜଳନ୍ଧରଙ୍କ ରସସିକ୍ତ ହୃଦୟର ପରିଚୟ ଦିଏ । କବିତାର ଭାଷା କବିତ୍ୱମୟ, ଛନ୍ଦ ସରଳ । କଳ୍ପନା ବୈଚିତ୍ର୍ୟ ଏଥିରେ ପ୍ରକଟିତ ।

ସ୍ୱର୍ଗତଃ ବିଶ୍ୱନାଥ କର ଥିଲେ ଆଧୁନିକ ଓଡ଼ିଆ ସାହିତ୍ୟର ଅନ୍ୟତମ ଦିଗ୍‌ଦ୍ରଷ୍ଟା । କେବଳ ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି ନୁହେଁ, ଶତାଧିକ ସାହିତ୍ୟିକ

ସୃଷ୍ଟି କରି ଓଡ଼ିଶାରେ ଏକ ସୁସ୍ଥ ସାହିତ୍ୟିକ ବାତାବରଣ ବିକାଶ ନିମନ୍ତେ ସେ ଏକନିଷ୍ଠ ଉଦ୍ୟମ କରିଥିଲେ । ଊନବିଂଶ ଶତାବ୍ଦୀର ଶେଷ ପାଦରୁ ବିଂଶ ଶତାବ୍ଦୀର ପ୍ରଥମ ଦୁଇଦଶକ ତାଙ୍କଦ୍ୱାରା ପ୍ରତିଷ୍ଠିତ ଓ ସମ୍ପାଦିତ 'ଉତ୍କଳ ସାହିତ୍ୟ' ପତ୍ରିକା ଓଡ଼ିଆ ସାହିତ୍ୟ ପ୍ରଚାର ଓ ପ୍ରସାର କ୍ଷେତ୍ରରେ କେନ୍ଦ୍ରବିନ୍ଦୁ ଥିଲା । ତାଙ୍କର ବଳିଷ୍ଠ ନେତୃତ୍ୱ ପତ୍ରପତ୍ରିକା ସଂପାଦନା କ୍ଷେତ୍ରରେ ଏକ ଆଦର୍ଶ ପ୍ରତିଷ୍ଠା କରିପାରିଥିଲା । ତାହାଙ୍କ ମୃତ୍ୟୁରେ ଉତ୍କଳୀୟ ପ୍ରଜ୍ଞା ଓ ପ୍ରତିଭାର ଜଣେ ବଳିଷ୍ଠ ପ୍ରତିନିଧି ଚିରଦିନ ପାଇଁ ବିଦାୟ ନେଇଥିଲେ । ତାହାଙ୍କ ମୃତ୍ୟୁ ସମସାମୟିକ ସମସ୍ତ ଓଡ଼ିଆ ଲେଖକ ଓ ପାଠକଙ୍କ ମନରେ ଗଭୀର ଭାବେ ରେଖାପାତ କରିଥିଲା ।

ଜଳନ୍ଧର ଦେବଙ୍କ ସହିତ ବିଶ୍ୱନାଥ କରଙ୍କ ସମ୍ପର୍କ ଥିଲା ଅତି ଘନିଷ୍ଠ । ଏହି ଆତ୍ମୀୟତା ଫଳରେ ଶୋକାଭିଭୂତ ଜଳନ୍ଧର ୧୯୩୫ ମସିହାରେ "ସ୍ୱର୍ଗତ ବିଶ୍ୱନାଥ କରଙ୍କ ପ୍ରତି" ଶୀର୍ଷକ କବିତାରେ ନିଜ ହୃଦୟର ଭାବାବେଗକୁ ରୂପ ଦେଇଛନ୍ତି । ସ୍ୱର୍ଗତ କରଙ୍କ ସହିତ ତାଙ୍କର ବିରୋଧ-ବର୍ଜିତ ଭ୍ରାତୃସୁଲଭ ସ୍ନେହ ସୌହାର୍ଦ୍ଦ୍ୟ ଏହି କବିତାରେ ଅତି ମର୍ମସ୍ପର୍ଶୀ ଭାବରେ ପ୍ରକାଶିତ । କବିତାର ନିମ୍ନୋକ୍ତ କେତୋଟି ପଂକ୍ତି ତାହାଙ୍କ ନିବିଡ଼ ଆତ୍ମୀୟତାକୁ ପ୍ରକାଶ କରିଥାଏ —

ଗଲ ଭାଇ ବିଶ୍ୱନାଥ ଦେଖା ହେବ ନାହିଁ ।
ପୁନର୍ଜନ୍ମେ ଦେଖା ଆଶା ଭୁଲିବି ମୁଁ କାହିଁ ?
ଲୀଳା ଖେଳା ସ୍ଥାନ ଅଟେ ଏ ମର୍ତ୍ତ୍ୟ ଭୁବନ ।
ସ୍ନେହ ପ୍ରୀତି ଅର୍ଜିଥିଲେ ମିଳିଥିଲା ମନ ।
ପବିତ୍ର ସୋଦର ଭାବ ବିରୋଧ ବର୍ଜିତ,
ସାହିତ୍ୟ ଉଦ୍ୟାନେ ହୋଇଥିଲା ବିକଶିତ ॥

କବିତାରେ ପ୍ରସଙ୍ଗକ୍ରମେ କେତେକ ଉପନିଷଦୀୟ ତତ୍ତ୍ୱାଧାରର ପରିପ୍ରକାଶ ଘଟିଥିଲେ ମଧ୍ୟ କବିଙ୍କ ହୃଦୟର ଗଭୀର ଶୋକାନୁଭୂତି ଏଥିରେ ଝଙ୍କୃତ ।

୧୩୪୦ ସାଲ ଆଷାଢ଼ ସଂଖ୍ୟା (୧୯୩୪ ମସିହା) ରେ ପ୍ରକାଶିତ କବିତା "ଅସ୍ପୃଶ୍ୟା" ଜଳନ୍ଧର ଦେବଙ୍କର ଏକ ଅଭିନବ ପ୍ରୟାସ । କବିତାଟି ଗଦ୍ୟଛନ୍ଦରେ ଲିଖିତ ଓ ଦୀର୍ଘ । ସମାଜରେ ପ୍ରଚଳିତ ଜାତିପ୍ରଥାକୁ ଏଥିରେ ତୀବ୍ରଭାବରେ ସମାଲୋଚନା କରାଯାଇଛି । ଉଚ୍ଚକୁଳର ଅହଂକାର ମଣିଷ ହୃଦୟରୁ ମାନବିକତାର ଆଦର୍ଶକୁ ଦୂରେଇ ନେଉଥିବା ସ୍ଥଳେ ନୀଚକୁଳର ନମ୍ରତା ଭିତରେ ମାନବିକ ମହତ୍ତ୍ୱ କିପରି ବିକଶିତ ହୋଇଥାଏ, ତାହା ଏହି ଭାବାତ୍ମକ କବିତା ମଧ୍ୟରେ ପ୍ରତିଫଳିତ । ମୂର୍ଚ୍ଛିତା ଅସ୍ପୃଶ୍ୟା ବାଳିକାକୁ ପାଣି ଟୋପାଏ ଦେବାକୁ ଜଣେ ବ୍ରାହ୍ମଣ ଯେତେବେଳେ ଜାତିବିରୁଦ୍ଧ ଆଚରଣ ବୋଲି ବିଚାର କରେ, ସେତେବେଳେ ମୂର୍ଚ୍ଛିତ ଉଚ୍ଚଜାତିର

ବ୍ୟକ୍ତିର ଜୀବନ ରକ୍ଷା ନିମନ୍ତେ ଅସ୍ପୃଶ୍ୟା ବାଳିକା ଗଙ୍ଗୀର ସମବେଦନା ପୂର୍ବକ ଶୁଶ୍ରୂଷା କରେ— ଏହାହିଁ ଏହି କବିତାର ବିଷୟବସ୍ତୁ । କବିତାଟି ଆଦର୍ଶଧର୍ମୀ । ଛନ୍ଦର ଲାଳିତ୍ୟ ବିଶେଷ ନଥିବାରୁ ରସବୋଧରେ ବ୍ୟାଘାତସୃଷ୍ଟି ହୁଏ । କବିତାରେ ପ୍ରତିଫଳିତ ଆଦର୍ଶ ନିମ୍ନୋକ୍ତ କେତୋଟି ପଂକ୍ତିରୁ ସୂଚିତ ହେବ ।

ଉଚ୍ଚର ସାହାଯ୍ୟ ଦୟାଗୁଣେ,
ନୀଚର ସାହାଯ୍ୟ ଲକ୍ଷଣାରେ,
ଏହା ଅଟେ ଲୋକଙ୍କ ବିଶ୍ୱାସ,
ମୋ ସାହାଯ୍ୟ ହେଉ,
କଲେ ତୁମ୍ଭେ ଅନୁଗ୍ରହ,
ପାଇବ କଳଙ୍କ ।
ଏଣୁ ନେଉଛୁ ବିଦାୟ,
ନୋହୁ ଦେଖା ଜୀବନରେ ଆଉ,
ଥାଅ ସୁଖେ ଦୀର୍ଘଜୀବୀ ହୁଅ ॥

**ନାଟ୍ୟସାହିତ୍ୟ**

କଳାଧର ଦେବ ଗୋଟିଏ ନାଟକ ଓ ଦୁଇଟି ଏକାଙ୍କିକା ରଚନା କରିଛନ୍ତି । ୧୩୪୧ ସାଲ ଶ୍ରାବଣ ସଂଖ୍ୟା (୧୯୩୪ ମସିହା)ରୁ ଆରମ୍ଭ ହୋଇ ପାଞ୍ଚଟି ସଂଖ୍ୟା 'ଉତ୍କଳ ସାହିତ୍ୟ' ପତ୍ରିକାରେ ତାହାଙ୍କ ନାଟକ 'ଉଦୟ ସିଂହ' ପ୍ରକାଶିତ । ଏହା ଏକ ଐତିହାସିକ ନାଟକ । ରାଜପୁତଙ୍କର ବୀରତ୍ୱ କାହାଣୀର ଆଧାରରେ ଏହା ରଚିତ ।

ରାଜପୁତମାନଙ୍କର ବୀରତ୍ୱବ୍ୟଞ୍ଜକ କାହାଣୀଗୁଡ଼ିକ ଭାରତୀୟ ଜନ ଜୀବନରେ ଗୋଟିଏ ଗୋଟିଏ ସ୍ମରଣୀୟ ଘଟଣା । ସ୍ୱାଭିମାନ ଓ ଆତ୍ମମର୍ଯ୍ୟାଦାର ପ୍ରତୀକରୂପେ ଏହାକୁ ଗ୍ରହଣ କରିଯାଏ । ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଭାରତୀୟ-ମାନଙ୍କ ମନରେ ଦେଶପ୍ରୀତି ଓ ଦେଶ ତଥା ଜାତିପାଇଁ ଚରମ ତ୍ୟାଗ ସ୍ୱୀକାର କରିବାର ମହତ୍ତ୍ୱ ପ୍ରଚାର ପାଇଁ ଏହିସବୁ କାହାଣୀ ବିଭିନ୍ନ ଭାବରେ ସେତେବେଳେ ପ୍ରଚାର କରାଯାଉଥିଲା । ସ୍ୱାଭିମାନର ପ୍ରତିଷ୍ଠା ପାଇଁ ଗୋଟିଏ ନାରୀ କିପରି ଚରମ ତ୍ୟାଗ ସ୍ୱୀକାର କରିବାକୁ କୁଣ୍ଠିତା ହୋଇ ନାହିଁ, ସେହିଭଳି ଏକ କାହାଣୀକୁ ନେଇ 'ଉଦୟ ସିଂହ' ନାଟକଟି ରଚିତ । ନାଟକର ବିଷୟବସ୍ତୁ ହେଉଛି:—

ମେବାରର ରାଣା ସଙ୍ଗଙ୍କର ତିନି ପୁତ୍ର—ରତ୍ନ, ବିକ୍ରମାଜିତ ଓ ଉଦୟ ସିଂହ । ରାଣା ସଙ୍ଗଙ୍କ ମୃତ୍ୟୁ ପରେ ରତ୍ନ ଗାଦିସୀନ ହୁଅନ୍ତି । ତାହାଙ୍କର ଅକାଳ ମୃତ୍ୟୁ

ହେବାରୁ ଦ୍ୱିତୀୟ ପୁତ୍ର ବିକ୍ରମାଜିତ ମେବାରର ରାଣା ହୁଅନ୍ତି । କିନ୍ତୁ ସର୍ଦ୍ଦାରମାନଙ୍କ ଅସନ୍ତୋଷ ଯୋଗୁଁ ସେ ଗାଦିଚ୍ୟୁତ ହୋଇ ବନ୍ଦୀ ହୁଅନ୍ତି । ପୃଥ୍ୱୀରାଜଙ୍କ ରକ୍ଷିତା ପୁତ୍ର ବନବୀର ରାଣା ରୂପେ ଅଭିଷିକ୍ତ ହୁଅନ୍ତି । ବନବୀରଙ୍କ ବାଲ୍ୟସଖା ବ୍ରାହ୍ମଣ ହମିକେଶଙ୍କ କୁମନ୍ତ୍ରଣାରେ ବନ୍ବୀର ବନ୍ଦୀ ବିକ୍ରମାଜିତଙ୍କୁ ହତ୍ୟା କରନ୍ତି । ବାଳକ ଉଦୟ ସିଂହଙ୍କ ଧାତ୍ରୀ ପାନ୍ନା ନିଜର ପୁତ୍ର ଚନ୍ଦନର ଜୀବନ ବିନିମୟରେ ଉଦୟ ସିଂହଙ୍କ ଜୀବନ ରକ୍ଷାକରନ୍ତି । ଭଣ୍ଡାରୀ ଯୁବକ ବାରୀ ସହ ଧାତ୍ରୀ ପାନ୍ନା ଉଦୟ ସିଂହଙ୍କୁ ଗୋପନରେ ମେବାରର ରାଜପ୍ରାସାଦରୁ ବହୁ ଦୂରକୁ ନେଇ ଯାଆନ୍ତି । ଆସନ୍ନ ବିପଦର ଆଶଙ୍କାରେ ମେବାରର କୌଣସି ସାମନ୍ତ ରାଜା ସେମାନଙ୍କୁ ଆଶ୍ରୟ ଦିଅନ୍ତି ନାହିଁ । ଶେଷରେ ସେମାନେ କୁମ୍ଭମେରୁ ଦୁର୍ଗାଧିପତି ଆଶା-ଶାଙ୍କ ଦ୍ୱାରସ୍ଥ ହୁଅନ୍ତି । ଆଶା-ଶାଙ୍କ ମାତା ଅମୃତ କୁମାରୀଙ୍କ ପରାମର୍ଶରେ ସେମାନଙ୍କୁ ସେଠାରେ ଆଶ୍ରୟ ମିଳେ । ମେବାରର ପ୍ରକୃତ ଉତ୍ତରାଧିକାରୀଙ୍କ ଜୀବନ ରକ୍ଷାହୁଏ ।

ନାଟକଟି ତିନିଅଙ୍କ ବିଶିଷ୍ଟ । ସମସାମୟିକ ନାଟ୍ୟଶୈଳୀର ପ୍ରଭାବ ଏଥିରେ ପ୍ରତିଫଳିତ । ଦୀର୍ଘ ସଂଳାପ ଏବଂ ଅନାବଶ୍ୟକ ସଙ୍ଗୀତାଦିର ସଂଯୋଜନା ନାଟକର କୃତ୍ରିମତା ବୃଦ୍ଧି କରିଛି । ନାଟକୀୟ ଦ୍ୱନ୍ଦ୍ୱର ଅଭାବ ଏଥିରେ ପରିଲକ୍ଷିତ ହୁଏ । ଘଟଣା ବିନ୍ୟାସ ବିଶେଷ ଗତିଶୀଳ ନୁହେଁ । ଚରିତ୍ରାୟନରେ ବହୁ ଅସ୍ୱାଭାବିକତା ପ୍ରତିଫଳିତ । ନିଜ ପୁତ୍ରର ଶବଦାହ କରି ଧାତ୍ରୀ ପାନ୍ନା ଯେଉଁ ଦୀର୍ଘ ଶୋକ ସଙ୍ଗୀତ ଗାନ କରିଛି, ତାହା ପରିବେଶାନୁସାରୀ ହୋଇନାହିଁ । ନାଟକରେ ଭାଷା ମାର୍ଜିତ ଓ ଶୁଦ୍ଧ, ଚରିତ୍ରାନୁସାରୀ ନୁହେଁ ।

ଉପରୋକ୍ତ ଦୋଷ ଦୁର୍ବଳତା ସତ୍ତ୍ୱେ ନାଟକଟି ଉପଭୋଗ୍ୟ ହୋଇ ପାରିଛି ।

୧୯୩୨ ମସିହାରେ 'ବିଚ୍ଛେଦ' ଓ ୧୯୩୩ ମସିହାରେ 'ରାଣାସିଂହଙ୍କର ମହାପ୍ରସ୍ଥାନ' ନାମକ ଦୁଇଗୋଟି ଏକାଙ୍କିକା 'ସହକାର' ପତ୍ରିକାରେ ପ୍ରକାଶିତ । ଏକ ପାରିବାରିକ ବନ୍ଧୁତ୍ୱର ନିବିଡ଼ତାକୁ ଆଧାର କରି 'ବିଚ୍ଛେଦ' ଏକାଙ୍କିକାଟି ରଚିତ । ଏହାର ଦୃଶ୍ୟ ସଂଖ୍ୟା ଏକ । 'ରାଣୁ' ଓ 'ଛଦୁ' ଦୁଇ ଅନ୍ତରଙ୍ଗ ବନ୍ଧୁ । ସେମାନଙ୍କ ବନ୍ଧୁତ୍ୱର ନିବିଡ଼ତା ବହୁଭାବରେ ପରିଲକ୍ଷିତ । 'ରାଣୁ' ରୋଗାକ୍ରାନ୍ତ ହୁଏ । ଛଦୁର ଏକନିଷ୍ଠ ସେବା ଶୁଶ୍ରୂଷା, ରାଣୁର ମୃତ୍ୟୁ ଏବଂ ଛଦୁର ଗଭୀର ଶୋକ ପ୍ରକାଶ ଇତ୍ୟାଦି ମାନବିକ ଭାବାବେଗକୁ ନେଇ ଗୋଟିଏ ଦୃଶ୍ୟରେ ଏହି ଏକାଙ୍କିକାଟି ପରିକଳ୍ପିତ ।

ରାଣାସିଂହଙ୍କର ମହାପ୍ରସ୍ଥାନ ଏକ ଐତିହାସିକ ଘଟଣା । ଏହାର ଅନୁସରଣରେ ଦୁଇ ଦୃଶ୍ୟ ସମ୍ବଳିତ ଏହି ଏକାଙ୍କିକା ରଚିତ । ରାଜପୁତ୍ ବୀର

ରଣାସିଂହଙ୍କର ବୀରତ୍ୱର ପରାକାଷ୍ଠା ଓ ନାଟକୀୟ ପରିବେଶରେ ତାଙ୍କର ମୃତ୍ୟୁ ଏଥିରେ ବର୍ଣ୍ଣିତ ।

ଏକ ପାର୍ବତ୍ୟ ଅଞ୍ଚଳର ପ୍ରାକୃତିକ ସୌନ୍ଦର୍ଯ୍ୟ ପରିପୂର୍ଣ୍ଣ ମଧ୍ୟରେ ପାହାଡ଼ର ପାଦଦେଶରେ ଅବସ୍ଥିତ ଏକ ସୈନ୍ୟ ଶିବିରରେ ରଣାଙ୍କର ପ୍ରଥମ ଆବିର୍ଭାବ ଘଟିଛି । ଜଣେ ସେନାପତିଙ୍କ ସହିତ ପରାମର୍ଶ କରୁକରୁ ରଣାସିଂହଙ୍କର ମଞ୍ଚ ଉପରେ ପ୍ରବେଶ ହୋଇଛି । ଏକାଙ୍କିକାର ଦ୍ୱିତୀୟ ଦୃଶ୍ୟରେ ଜଣେ ସନ୍ନ୍ୟାସୀଙ୍କ ସହିତ କଥୋପକଥନ ବେଳେ ରଣାସିଂହଙ୍କର ମହାପ୍ରସ୍ଥାଣ ହୋଇଛି ।

ଏକାଙ୍କିକା ଦୁଇଟିର ଭାଷା, ଉପସ୍ଥାପନା ଶୈଳୀ ଗତାନୁଗତିକ । ଲେଖକ ପ୍ରକୃତିର ଦୃଶ୍ୟସମୂହକୁ ଅତି ସୁନ୍ଦର ଓ ମନୋମୁଗ୍ଧକର ଭାବରେ ଉପସ୍ଥାପିତ କରିପାରିଛନ୍ତି ।

ଏକାଙ୍କିକା ଦୁଇଟିରେ ମାନବିକ ସମ୍ବେଦନଶୀଳତା ଦର୍ଶାଇବା ପାଇଁ ଲେଖକ ପ୍ରୟାସ କରିଛନ୍ତି । ଘଟଣା ଉପସ୍ଥାପନ, ବର୍ଣ୍ଣନାଶୈଳୀ, ଚରିତ୍ରଚିତ୍ରଣ ପ୍ରଭୃତିରେ ଦୋଷତ୍ରୁଟି ରହିଛି । ତଥାପି ଜଳନ୍ଧରଙ୍କ ସାହିତ୍ୟିକ ପ୍ରତିଭାର ପରିପ୍ରକାଶ ଏଥିରେ ନିଶ୍ଚୟ ଘଟିଛି, ଏହା ଅସ୍ୱୀକାର କରିହେବ ନାହିଁ ।

## ଡାଏରୀର କିୟଦଂଶ (ଭ୍ରମଣ ବୃତ୍ତାନ୍ତ)

ଏହା ପୁସ୍ତକାକାରରେ ୧୯୫୬ ମସିହାରେ ପ୍ରକାଶିତ । ଡାଏରି ବା ଦିନଲିପି କହିଲେ ଯାହା ବୁଝାଏ, ପ୍ରକୃତରେ ଏହା ତାହା ନୁହେଁ । ଏଥିରେ ବିଭିନ୍ନ ବିଷୟରେ ତାତ୍ତ୍ୱିକ ଓ ଭକ୍ତିମୂଳକ ବୌଦ୍ଧିକ ଆଲୋଚନା ପ୍ରଦତ୍ତ ହୋଇଛି । ଏହି ଗ୍ରନ୍ଥ ଏକ ଭ୍ରମଣ ବୃତ୍ତାନ୍ତ । ବିଭିନ୍ନ ସ୍ଥାନରେ ଐତିହାସିକ ତଥା ଅନ୍ୟାନ୍ୟ ମହତ୍ତ୍ୱ, ବିଭିନ୍ନ ବ୍ୟକ୍ତିବିଶେଷଙ୍କ ଗୁଣାଗୁଣ, ବିଭିନ୍ନ ଘଟଣାପ୍ରବାହ ଇତ୍ୟାଦିକୁ ଲେଖକ ଅତି ସରଳ ସାବଲୀଳ ଭାବରେ ଏଥିରେ ବର୍ଣ୍ଣନା କରିଛନ୍ତି ।

ଘଟଣାକ୍ରମେ କିଛିଦିନ ଡାଏରୀ ଲେଖିବା ନିମନ୍ତେ ଲେଖକଙ୍କର ଆଗ୍ରହ ହୋଇଥିଲା । ବିଶେଷତଃ ସିଂହଳ ଭ୍ରମଣକାଳରେ ସେଠାକାର ପରିବେଶ, ଐତିହାସିକ ଓ ଧାର୍ମିକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ସମ୍ବନ୍ଧରେ ବିଭିନ୍ନ ତଥ୍ୟ ସେ ଲିପିବଦ୍ଧ କରିବା ଉଦ୍ଦେଶ୍ୟରେ ଡାଏରୀ ଲେଖିବା ଆରମ୍ଭ କରିଥିଲେ । ସ୍ୱାସ୍ଥ୍ୟଗତ କାରଣରୁ ଭାରତର ବିଭିନ୍ନ ସ୍ଥାନ ପରିଦର୍ଶନ ସମୟରେ ତାଙ୍କ ମନରେ ଯେଉଁସବୁ ଭାବ ଓ ଭାବନା ଉଦ୍ରେକ ହୋଇଛି, ସେ ସମ୍ପର୍କରେ ସେ ଗମ୍ଭୀରତାର ସହ ଆଲୋଚନା କରିଛନ୍ତି । ଏହାର ରଚନାଶୈଳୀ ସୁଖପାଠ୍ୟ ହୋଇଛି । ଜ୍ଞାନଗର୍ଭକ ଓ ବେଳେ ବେଳେ ତତ୍ତ୍ୱପୂର୍ଣ୍ଣ ହେଲେହେଁ ହାସ୍ୟରସର ସମାବେଶ ରଚନାକୁ ଉପଭୋଗ୍ୟ କରିପାରିଛି ।

୧୯୧୧ ମସିହାରୁ ଏହାର ରଚନା ଆରମ୍ଭ ହୋଇଥିଲା । କିଛୁଅଂଶ ଧାରାବାହିକଭାବେ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ । ସମଗ୍ର ରଚନା ଭିତରେ ବହୁ ଐତିହାସିକ, ଆଧ୍ୟାତ୍ମିକ, ଜୀବନୀ ସମ୍ବନ୍ଧୀୟ ତଥା ନୀତିଗତ ତଥ୍ୟମାନ ସନ୍ନିବେଶ କରାଯାଇଛି । 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ କେତେକ ଅଂଶର ସଂକ୍ଷିପ୍ତ ସୂଚନା ଏଠାରେ ପ୍ରଦତ୍ତ ହେଲା । ଏଥିରୁ ଲେଖକଙ୍କ ପାଣ୍ଡିତ୍ୟ, ସାହିତ୍ୟ ସଂସ୍କୃତି ସମ୍ପର୍କରେ ଆଗ୍ରହ ବିଷୟରେ ସମ୍ୟକ ପରିଚୟ ମିଳିପାରିବ ।

'ଡାଏରୀର କିୟଦଂଶ'ର ପ୍ରଥମ ଅଂଶଟି ଚୈତ୍ର ୧୩୧୮ ସାଲ 'ଉତ୍କଳ ସାହିତ୍ୟ'ରେ ପ୍ରକାଶ ପାଇଛି । ପୂର୍ବରୁ ଲେଖକଙ୍କର ଡାଏରୀ ଲେଖିବାର ଅଭ୍ୟାସ ନଥିଲା ବୋଲି ପ୍ରଥମେ ପ୍ରକାଶ କରି ସ୍ୱାସ୍ଥ୍ୟଗତ କାରଣରୁ ଡାକ୍ତରଙ୍କ ପରାମର୍ଶକ୍ରମେ ସେ ଯେତେବେଳେ କଲିକତାରୁ ଓ୍ୱାଲ୍‌ଟିଅର ଅଭିମୁଖେ ଯାତ୍ରା କଲେ, ସେହିସବୁ ବ୍ୟକ୍ତିଗତ ଅନୁଭୂତିକୁ ଲିପିବଦ୍ଧ କରିବା ଅଭିପ୍ରାୟରେ ଡାଏରୀ ଲେଖିଥିଲେ । ଏହି ଅଂଶରେ କଲିକତାରୁ ଯାତ୍ରାରମ୍ଭ, ହେଲିସ୍ ଧୂମକେତୁ ସମ୍ପର୍କରେ କିଛି ତଥ୍ୟ ଓ ଓ୍ୱାଲ୍‌ଟିୟରରେ ପହଞ୍ଚିଲା ପର୍ଯ୍ୟନ୍ତ ରେଳରାସ୍ତାର ଦୁଇ ପାର୍ଶ୍ୱରେ ଥିବା ବିଭିନ୍ନ ପ୍ରାକୃତିକ ଦୃଶ୍ୟାବଳୀ ବର୍ଣ୍ଣିତ ।

ଦ୍ୱିତୀୟ ଅଂଶଟି ପ୍ରକାଶ ପାଇଛି ୧୩୧୮ ସାଲ ବୈଶାଖ ସଂଖ୍ୟାରେ । ଓ୍ୱାଲ୍‌ଟିୟରରେ ଦୁଇମାସକାଳ ରହିଣି ମଧ୍ୟରେ ସେଠାକାର ଜନଜୀବନ ଓ ସମୁଦ୍ର କୂଳରେ ଭ୍ରମଣକାଳରେ କେତେକ ଜନଜୀବନଙ୍କ ସମ୍ପର୍କରେ ସୂଚନା ଦିଆଯାଇଛି । ନିକଟସ୍ଥ ତୀର୍ଥକ୍ଷେତ୍ର ସୀମାଚଲମ୍ ଦର୍ଶନ ଓ ସେଠାକାର ଦେବତାଙ୍କ ସମ୍ପର୍କରେ କିଛି ତଥ୍ୟ ପ୍ରଦାନ କରାଯାଇଛି ।

ତୃତୀୟ ଅଂଶଟି ୧୩୧୮ ସାଲ ଆଷାଢ଼ ସଂଖ୍ୟାରେ ପ୍ରକାଶିତ । ଓ୍ୱାଲ୍‌ଟିୟରରୁ ରାମେଶ୍ୱରମ୍ ଓ ସେଠାରୁ ମଦୁରାଇ ପ୍ରଭୃତିକୁ ଯିବା, ସେହିସବୁ ସ୍ଥାନର ବିଭିନ୍ନ ମନ୍ଦିରଗୁଡ଼ିକର ସ୍ଥାପତ୍ୟ ତଥା ଦେବାଦେବୀଙ୍କ ସମ୍ପର୍କରେ ଆଲୋଚନା କରାଯାଇଛି ।

ପରବର୍ତ୍ତୀ ଅଂଶଟି ୧୩୧୮ ସାଲ ଶ୍ରାବଣ ସଂଖ୍ୟାରେ ସ୍ଥାନ ପାଇଛି । ତ୍ରିଚିନୋପଲିରୁ ମଟର୍ ଲଞ୍ଚ୍ ଯୋଗେ ସିଂହଳ ଯାତ୍ରା ଓ କଲୋମ୍ବୋ ସହରରେ ଅବତରଣାଦି ବର୍ଣ୍ଣିତ । ୧୩୧୯ ସାଲ ମାର୍ଗଶିର ସଂଖ୍ୟାରେ ପ୍ରକାଶିତ ଅଂଶରେ କଲୋମ୍ବୋର ବିଭିନ୍ନ ପ୍ରାଚୀନ କୀର୍ତ୍ତି, ବୌଦ୍ଧ ମନ୍ଦିର ଓ ବୌଦ୍ଧ ବିହାର ସମ୍ପର୍କରେ ବିସ୍ତୃତ ଆଲୋଚନା ସହ ସିଂହଳର ଇତିହାସ ସମ୍ପର୍କରେ କେତେକ ତଥ୍ୟ ଉପସ୍ଥାପିତ କରାଯାଇଛି । ୧୩୧୯ ସାଲ ବୈଶାଖ ସଂଖ୍ୟାରେ ସିଂହଳର ବିଭିନ୍ନ ସ୍ଥାନ ଭ୍ରମଣ ବିଷୟ ବର୍ଣ୍ଣିତ । 'କାଣ୍ଡି'ର ପ୍ରାକୃତିକ ସୌନ୍ଦର୍ଯ୍ୟ, ବୌଦ୍ଧ ବିହାର ଓ ଧାତୁଗର୍ଭ

ବା ତେଗୋଟାର ସୁନ୍ଦର ବର୍ଣ୍ଣନା କରାଯାଇଛି । ପରବର୍ତ୍ତୀ ଅଂଶ ୧୩୮୧ ସାଲ ଭାଦ୍ର ସଂଖ୍ୟାରେ ପ୍ରକାଶିତ । ଏଥିରେ ସିଂହଳର ଅନୁରାଧାପୁର ସହରର ପ୍ରାଚୀନ କୀର୍ତ୍ତିସମୂହ ବର୍ଣ୍ଣିତ । ହିନ୍ଦୁମାନଙ୍କଦ୍ୱାରା କିପରି ବିଶାଳ ବୌଦ୍ଧକୀର୍ତ୍ତି ସମୂହ ଧୂଳିସାତ୍ ହୋଇଛି, ତାହାର ଆଲୋଚନା ଏଥିରେ ସ୍ଥାନ ପାଇଛି ।

୧୩୩୫ ସାଲ ମାଘ ସଂଖ୍ୟା 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ ଅଂଶଟି ତାଳଚେର ପଟ୍ଟାଯତ ପ୍ରମୋଦ ପ୍ରସାଦଙ୍କ ବିବାହ ପ୍ରସଙ୍ଗରୁ ଆରମ୍ଭ । ଦେବଗଡ଼ଠାରେ ବିବାହ ଶେଷ ପରେ ବରଯାତ୍ରୀଙ୍କର ତାଳଚେର ପ୍ରତ୍ୟାବର୍ତ୍ତନ, ପଥ ମଧ୍ୟରେ ବର୍ଷା, ଶେଷ ମୁହୂର୍ତ୍ତରେ ଲେଖକଙ୍କର ବରଯାତ୍ରୀ ସହ ଯିବା ପ୍ରସ୍ତାବ ବନ୍ଦ ପ୍ରଭୃତି ପ୍ରସଙ୍ଗ, ତିନିଦିନ ପରେ ରେଳ ଯୋଗେ ତାଳଚେର ଗମନ ଓ ସେଠାରେ ଆଠଦିନ ବ୍ୟାପି ଉତ୍ସବାନୁଷ୍ଠାନରେ ଯୋଗଦାନ, ପ୍ରତିବେଶୀ ରାଜାମାନଙ୍କ ସହ ଆଳାପ, ଛଉନୃତ୍ୟ, ମୋହନ ଗୋସ୍ୱାମୀଙ୍କ 'ରାସଲୀଳା' ଓ ଅନ୍ୟାନ୍ୟ ସାଂସ୍କୃତିକ ଉତ୍ସବର ବର୍ଣ୍ଣନା କରାଯାଇଛି । ତାଳଚେରସ୍ଥ 'ପ୍ରମୋଦ କ୍ଲବ'ର ସଦସ୍ୟମାନଙ୍କଦ୍ୱାରା ପଟ୍ଟାୟତଙ୍କ ସମ୍ବର୍ଦ୍ଧନା ନିମନ୍ତେ ସଭାର ଆୟୋଜନ ଓ ଲେଖକଙ୍କ ଭାଷଣ ପ୍ରଦାନ ଇତ୍ୟାଦି ବିବରଣାତ୍ମକ ରଚନା ପରେ ରାତ୍ରିରେ ଲେଖକଙ୍କ ମନରେ ସମସାମୟିକ ସାମନ୍ତ ରାଜାମାନଙ୍କ ଆଚରଣର ସମ୍ପର୍କରେ ଯେଉଁ ଚିନ୍ତା ଆସିଛି, ତାହାକୁ ଲିପିବଦ୍ଧ କରିଛନ୍ତି । ସେକ୍ସପିଅରଙ୍କର ଗୋଟିଏ ଉକ୍ତି ତାଙ୍କ ସ୍ମରଣକୁ ଆସିଛି—

For princes are the glass, the school, the book,
Where subjects' eyes do learn, do read, do look.

ଧନ ଯୌବନ କ୍ଷମତା ପ୍ରତିପତ୍ତି ଯୋଗୁଁ ପଥଭ୍ରଷ୍ଟ ହୋଇ ବହୁ ରାଜାଙ୍କର ଅକାଳ ବିୟୋଗ ଘଟେ । ସେଥିପାଇଁ ରାଜାମାନଙ୍କର ଚରିତ୍ରବତ୍ତା, ଆତ୍ମରକ୍ଷା, ଏକାନ୍ତ ଆବଶ୍ୟକ ବୋଲି ଲେଖକ ମତ ଦେଇଛନ୍ତି । ତାଳଚେର ରାଜାଙ୍କର କେତେକ ସଦ୍‌ଗୁଣ ପାଇଁ ସେ ପ୍ରଶଂସା କରିଛନ୍ତି । ରାଜଉଆସରେ ପରିଚାରିକା ନିୟୋଗର ଯେଉଁ କୁପରମ୍ପରା ପ୍ରାୟ ସବୁ ରାଜ୍ୟରେ ପ୍ରଚଳିତ ଥିଲା, ଯାହା ଫଳରେ ଶତଶତ ନିରୀହ ନାରୀଙ୍କ ଜୀବନ ଦୁଃଖ, ଦୈନ୍ୟ ଓ ଯନ୍ତ୍ରଣାରେ ଅତିବାହିତ ହେଉଥିଲା, ୧୯୦୭ ମସିହାରେ ତାଳଚେର ରଜା ତାହାଙ୍କ ନବରରେ ସେ ପ୍ରଥା ବନ୍ଦ କରାଇ ସାହାସିକ ପଦକ୍ଷେପ ନେଇଛନ୍ତି ବୋଲି ଉଲ୍ଲେଖ କରିଛନ୍ତି । ପ୍ରସଙ୍ଗକ୍ରମେ 'ମୟୂରଭଞ୍ଜ'ର ବରେଣ୍ୟ ରାଜା ରାମଚନ୍ଦ୍ର ଭଞ୍ଜ ଓ ବାମଣ୍ଡାର ସୁଚଳଦେବଙ୍କ ପ୍ରଶଂସା କରାଯାଇଛି । ପ୍ରଜାଙ୍କ ମଙ୍ଗଳ ନିମନ୍ତେ ସୁଢ଼ଳଦେବ କିପରି ବହୁ ଜନହିତକର କାର୍ଯ୍ୟ କରିଥିଲେ, ମାଦକଦ୍ରବ୍ୟ ସେବନର ବିଲୋପ ନିମନ୍ତେ ଯେଉଁସବୁ କଠୋର

କାର୍ଯ୍ୟାନୁଷ୍ଠାନ କରିଥିଲେ ଏବଂ ଓଡ଼ିଆ ଭାଷା ଓ ସଂସ୍କୃତିର ବିକାଶ ନିମନ୍ତେ ଯେଉଁ ଆନ୍ତରିକ ଉଦ୍ୟମ କରିଥିଲେ, ସେସବୁର କେତେକ ଦୃଷ୍ଟାନ୍ତ ଏଥିରେ ଦର୍ଶାଯାଇଛି ।

୧୩୩୫ ସାଲ ଫାଲଗୁନ ସଂଖ୍ୟାରେ ପ୍ରକାଶିତ ଅଂଶରେ ତାଳଚେରରୁ ରେଳ ଯୋଗେ ପୁରୀ ଅଭିମୁଖେ ଗମନ, ପୁରୀ ରାଜାଙ୍କର ଆତିଥ୍ୟଗ୍ରହଣ, ଏକମାସକାଳ ପୁରୀରେ ଅବସ୍ଥାନ, ପୁରୀ ସହରର ପ୍ରାକୃତିକ ସୌନ୍ଦର୍ଯ୍ୟ ପ୍ରଭୃତିର ବର୍ଣ୍ଣନା ପରେ ପରେ ଓଡ଼ିଆ ଜାତିର ଦେବତା ଜଗନ୍ନାଥଙ୍କ ସମ୍ପର୍କରେ ଆଲୋଚନା କରାଯାଇଛି । କିମ୍ବଦନ୍ତୀ ପ୍ରଚଳିତ ଇନ୍ଦ୍ରଦ୍ୟୁମ୍ନ କାହାଣୀ ଓ ଜଗନ୍ନାଥଙ୍କ ସମ୍ପର୍କରେ ପୁରାଣଶାସ୍ତ୍ରରେ ଉଲ୍ଲେଖ ଥିବା ବହୁ ମତାମତକୁ ଯୁକ୍ତିଯୁକ୍ତ ଭାବରେ ପର୍ଯ୍ୟାଲୋଚନା କରି ଜଗନ୍ନାଥ, ସୁଭଦ୍ରା, ବଳଭଦ୍ର ଓ ସୁଦର୍ଶନଙ୍କୁ ବୁଦ୍ଧ, ଧର୍ମ, ସଙ୍ଘ ଓ ସୁଦର୍ଶନ ବୋଲି ପ୍ରମାଣ କରିଛନ୍ତି । ବିଭିନ୍ନ ଗ୍ରନ୍ଥରୁ ପ୍ରମାଣମାନ ଉପସ୍ଥାପିତ କରି ନେପାଳରେ ପୂଜିତ ବୁଦ୍ଧଙ୍କ ସହିତ ପୁରୀର ଜଗନ୍ନାଥଙ୍କ ସାମ୍ୟ ପ୍ରତିପାଦନ କରିଛନ୍ତି । ଆଲୋଚନାଟି ଅତ୍ୟନ୍ତ ମୌଳିକ ତଥା ସୂଚନାତ୍ମକ ।

୧୩୩୫ ବୈଶାଖ ସଂଖ୍ୟାରେ ପ୍ରକାଶିତ ଅଂଶ ମଧ୍ୟ ପୁରୀର ଶ୍ରୀଜଗନ୍ନାଥ ତତ୍ତ୍ୱ ସମ୍ବନ୍ଧୀୟ । ନୀଳାଦ୍ରି ମହୋଦୟ, ସ୍କନ୍ଦପୁରାଣ, ନାରଦୀୟ ପୁରାଣ ପ୍ରଭୃତିରେ ଥିବା ଜଗନ୍ନାଥଙ୍କ ସମ୍ପର୍କୀୟ ମତାମତର ବିଭିନ୍ନତା ସହ ରଥଯାତ୍ରା ସମ୍ପର୍କରେ ଆଲୋଚନା କରାଯାଇଛି । ସୁନାଆଁରେ ପୁରୀ ରାଜାଙ୍କର ଅଙ୍କ ପରିବର୍ତ୍ତନ ଉତ୍ସବ, ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଉପାଧିପ୍ରଦାନ ଇତ୍ୟାଦିର ସ୍ୱାତନ୍ତ୍ର୍ୟ କପରି ଓଡ଼ିଆ ଜାତିର ସ୍ମରଣୀୟ ବୈଶିଷ୍ଟ୍ୟ, ତାହା ଦର୍ଶାଇଛନ୍ତି । ଅଜନ୍ତା ଏଲୋରାରେ ଗୁମ୍ଫାଗୁଡ଼ିକ ଦର୍ଶନ ନିମନ୍ତେ ପୁରୀରୁ ରେଳ ଯୋଗେ ପ୍ରସ୍ଥାନ । ହାଇଦରାବାଦ୍‌କୁ ଯାତ୍ରାପଥରେ ଗୋଦାବରୀ ନଦୀ, ବିଶାଖାପାଟଣା ଇତ୍ୟାଦିର ବର୍ଣ୍ଣନା, ସିକନ୍ଦରାବାଦ ସହର, ଗୋଲକୁଣ୍ଡା ଦୁର୍ଗ ପରିଦର୍ଶନ ଇତ୍ୟାଦି ଏହି ଅଂଶରେ ସ୍ଥାନ ପାଇଛି ।

୧୩୩୫ ସାଲ ଜ୍ୟେଷ୍ଠ ସଂଖ୍ୟାରେ ପ୍ରକାଶିତ ଅଂଶ ଅଜନ୍ତା ଏଲୋରାର ଗୁମ୍ଫାସମୂହ ସମ୍ପର୍କରେ ଐତିହାସିକ ତଥା ସ୍ଥାପତ୍ୟ ସମ୍ବନ୍ଧୀୟ ଆଲୋଚନାରେ ପୂର୍ଣ୍ଣ । ଏହାବ୍ୟତୀତ ଦୌଲତାବାଦ ଓ ଔରଙ୍ଗାବାଦ ସହରଦ୍ୱୟରେ ଥିବା ଦୁର୍ଗ ଓ ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନର ବିସ୍ତୃତ ବର୍ଣ୍ଣନା ଏଥିରେ ସନ୍ନିବେଶିତ ।

ଏହି ଭ୍ରମଣ କାହାଣୀରେ ବହୁ ଐତିହାସିକ, ଆଧ୍ୟାତ୍ମିକ ତଥା ସାମାଜିକ ତଥ୍ୟଗୁଡ଼ିକ ସନ୍ନିବେଶିତ ହୋଇଥିବାରୁ ଏହାର ମୌଳିକ ମୂଲ୍ୟ ଯଥେଷ୍ଟ ରହିଛି । ପ୍ରସଙ୍ଗକ୍ରମେ ଲେଖକ ଭ୍ରମଣକାଳରେ ଯେଉଁମାନଙ୍କ ସଂସ୍ପର୍ଶରେ ଆସିଛନ୍ତି, ସେହି ସେହି ବ୍ୟକ୍ତିମାନଙ୍କର ଆଗ୍ରହବ୍ୟବହାର, ଚାଲିଚଳନ ସମ୍ପର୍କରେ ବହୁ କଥା ଉଲ୍ଲେଖ କରିଛନ୍ତି ।

ରେଳ ଷ୍ଟେସନରେ କୁଲି, ଟ୍ୟାକ୍ସି ଡ୍ରାଇଭରଠାରୁ ଆରମ୍ଭକରି ହାଇଦରାବାଦର ପଦସ୍ଥ ପ୍ରଶାସନଙ୍କ ଅଧିକାଂଶ ପର୍ଯ୍ୟନ୍ତ ତାହାଙ୍କ ରଚନାରେ ସ୍ଥାନ ପାଇଛନ୍ତି । ବିଭିନ୍ନ ଅଞ୍ଚଳର ଲୋକଙ୍କ ସମ୍ପର୍କରେ ବ୍ୟକ୍ତିଗତ ଅନୁଭୂତି ପ୍ରସୂତ ତଥ୍ୟଗୁଡ଼ିକ ରଚନାକୁ ସୂଚନାତ୍ମକ କରିପାରିଛି ।

ପୁସ୍ତକଟିର ଭାଷା ସରଳ, ବର୍ଣ୍ଣନାଶୈଳୀ ସାବଲୀଳ ଓ ବିବରଣାତ୍ମକ । ସ୍ଥାନେ ସ୍ଥାନେ ହାସ୍ୟରସର ସଂଯୋଗ ଦ୍ୱାରା ଏହା ଅଧିକ ସୁଖପାଠ୍ୟ ହୋଇପାରିଛି । ଭ୍ରମଣକାଳରେ ଖାଇବା ପିଇବା ସମ୍ପର୍କରେ ତାଙ୍କର ସଚେତନତାକୁ ପ୍ରକାଶ କରିବାକୁ ଯାଇ କହିଛନ୍ତି—"ଘରେ ଆଅ, ଅରଣ୍ୟରେ ଆଅ, ରେଲ୍‌ରେ ଆଅ, ପେଟ ଅଛି ସାଙ୍ଗରେ । ଏଣୁ ପେଟ ଚିନ୍ତା ଆଗ, ସବୁ ଚିନ୍ତା ପଛ ।"

ଜଳନ୍ଧର ଦେବଙ୍କ 'ଡାଏରୀର କିଯ଼ଦଂଶ' ଓଡ଼ିଆ ଭ୍ରମଣ ସାହିତ୍ୟକୁ ଏକ ଉଲ୍ଲେଖନୀୟ ଅବଦାନ କହିଲେ ଅତ୍ୟୁକ୍ତି ହେବନାହିଁ । 'ଉତ୍କଳ ସାହିତ୍ୟ'ର ପ୍ରାୟ ବିଂଶାଧିକ ସଂଖ୍ୟାରେ ଧାରାବାହିକ ଭାବରେ ପ୍ରକାଶିତ । ଏହାର ସାହିତ୍ୟିକ ମୂଲ୍ୟ ଯେତିକି, ଐତିହାସିକ ମୂଲ୍ୟ ତାହାଠାରୁ ଅଧିକ । ଏଠାରେ କେତେଗୋଟି ମାତ୍ର ସଂଖ୍ୟାର ଆଲୋଚନା କରାଯାଇଛି ।

□

# ଉପସଂହାର

ସ୍ୱର୍ଗତଃ ଜଳନ୍ଧର ଦେବଙ୍କ ବହୁମୁଖୀ ପ୍ରତିଭାକୁ ସମ୍ମାନ ଜଣାଇ ଆଲୋଚକ ଅଧ୍ୟାପକ ଶ୍ରୀ ରାମଚନ୍ଦ୍ର ବ୍ରହ୍ମା ଯଥାର୍ଥରେ କହିଛନ୍ତି—"ସାହିତ୍ୟିକର ମହତ୍ତ୍ୱ ତଥା ବ୍ୟକ୍ତିତ୍ୱ ଫୁଟେ ତା'ର ସାହିତ୍ୟ କୃତିରେ । ତେଣୁ ବାମଣ୍ଡାର ଲବ୍ଧ-ପ୍ରତିଷ୍ଠିତ ସାହିତ୍ୟିକ ଜଳନ୍ଧର ଦେବଙ୍କ ବ୍ୟକ୍ତିତ୍ୱ ତାଙ୍କ ପ୍ରଣୀତ ପ୍ରବନ୍ଧ, ଗଳ୍ପ, ନାଟକ ତଥା କବିତାରେ ହିଁ ଆତ୍ମପ୍ରକାଶ କରିଛି । ତାଙ୍କର ବହୁମୁଖୀ ପ୍ରତିଭା ସାହିତ୍ୟର ବିଭିନ୍ନ ବିଭାଗ (ପ୍ରବନ୍ଧ, ଗଳ୍ପ, ନାଟକ ଏବଂ କବିତା)ର ବିକାଶସାଧନ ସଙ୍ଗେ ସଙ୍ଗେ ଚିତ୍ର, ବିଦ୍ୟା ତଥା ସ୍ଥାପତ୍ୟକଳାର ପରିପ୍ରକାଶ ସାଧନ ଏବଂ ସମାଜ ତଥା ଦେଶର ମଙ୍ଗଳ ବିଧାନରେ ଅଭିନିବିଷ୍ଟ ଥିଲା । ତେଣୁ ତାଙ୍କର ମହନୀୟ ଆଦର୍ଶ ତାଙ୍କ ଜୀବନକୁ ଗଭୀରଭାବେ ଅନୁପ୍ରାଣିତ କରିଥିଲା ।"

ରାଜକୁଳରେ ଜନ୍ମ ହୋଇଥିଲେ ସତ, କିନ୍ତୁ ବୃଥା ରାଜକୀୟ ଆଡ଼ମ୍ବର ଓ ଭୋଗବିଳାସରୁ ସମ୍ପୂର୍ଣ୍ଣ ମୁକ୍ତ ରହି ଜ୍ଞାନ ଅନ୍ୱେଷଣରେ ସେ ସାରାଜୀବନ ଅତିବାହିତ କରିଥିଲେ । ତାହାଙ୍କ ସମ୍ବେଦନଶୀଳ ହୃଦୟ ତାଙ୍କୁ ସମାଜର ସବୁ ସ୍ତରର ଲୋକଙ୍କ ସହିତ ଏକାତ୍ମ କରିପାରିଥିଲା । ଭାରତୀୟ ଜନଜୀବନର ଦୁଃଖ ଓ ଦୈନ୍ୟ ଦୈବକୃତ ନୁହେଁ । ବିଭିନ୍ନ ଅନ୍ଧବିଶ୍ୱାସ ତଥା କୁସଂସ୍କାରଦ୍ୱାରା ଆଚ୍ଛନ୍ନ ରହିଥିବାରୁ ଭାରତରେ ଦାରିଦ୍ର୍ୟ, ଅଜ୍ଞାନତା ପ୍ରଭୃତିର ପ୍ରଭାବ ଅଧିକ ବୋଲି ସେ ଭାବିଥିଲେ । ସେହିସବୁ ରକ୍ଷଣଶୀଳ ମନୋଭାବକୁ ଦୂରକରିବା ପ୍ରୟାସରେ ସାହିତ୍ୟକୁ ସେ ମାଧ୍ୟମ ରୂପେ ଗ୍ରହଣ କରିଥିଲେ । ତାହାଙ୍କ ମତରେ ଯେଉଁ ସାହିତ୍ୟ ସାମାଜିକ ପ୍ରୟୋଜନରେ ଆସେନାହିଁ, ତାହା ପ୍ରକୃତ ସାହିତ୍ୟ ପଦବାଚ୍ୟ ନୁହେଁ ।

ସହସ୍ରାଧିକ ବର୍ଷର ଭାରତୀୟ ପାରମ୍ପରିକ ବିଶ୍ୱାସ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାପାଇଁ ସେହିପରି ପର୍ଯ୍ୟାପ୍ତ ଜ୍ଞାନର ଆବଶ୍ୟକ ଥିଲା । ତେଣୁ ଜଳନ୍ଧର ଗଭୀର ଅଧ୍ୟବସାୟ ଓ ନିଷ୍ଠାଦ୍ୱାରା ଇଂରାଜୀ, ହିନ୍ଦୀ, ବଙ୍ଗଳା, ସଂସ୍କୃତ ପ୍ରଭୃତି ଭାଷା ଓ ସାହିତ୍ୟରେ ଗଭୀର ପାଣ୍ଡିତ୍ୟ ଅର୍ଜନ କରିଥିଲେ । ଭାରତର ବିଭିନ୍ନ ସ୍ଥାନ ଭ୍ରମଣକରି ଓ ବିଭିନ୍ନ ଲୋକଙ୍କ ସଂସ୍ପର୍ଶରେ ଆସି ସେ ସର୍ବଦା ତାଙ୍କ ଜ୍ଞାନର ପରିସୀମାକୁ ବ୍ୟାପକ କରିବାପାଇଁ ପ୍ରୟାସ କରିଥିଲେ ।

ସାହିତ୍ୟ ପ୍ରତି ତାଙ୍କର ଦୃଷ୍ଟିଭଙ୍ଗୀ ଥିଲା ସ୍ପଷ୍ଟ ଓ ମାର୍ଜିତ । ତାହାଙ୍କ ରଚନାବଳୀ ମଧ୍ୟରେ ଏହି ଦୃଷ୍ଟିକୋଣ ସୁନ୍ଦରଭାବେ ପ୍ରତିଫଳିତ ହୋଇଛି । ଯାହା ସେ ଅନୁଭବ କରୁଥିଲେ, ତାହାକୁ ସେ ନିର୍ଭୀକ ଭାବରେ ସରଳ ଓ ସାବଲୀଳ ଭାଷା ମାଧ୍ୟମରେ ଯୁକ୍ତିଯୁକ୍ତ ଭାବରେ ଉପସ୍ଥାପନ କରିଅଛନ୍ତି । ଧର୍ମ, ଦର୍ଶନ, ଈଶ୍ୱରତତ୍ତ୍ୱର ପର୍ଯ୍ୟାଲୋଚନା ନିମନ୍ତେ ସେ ଭାରତୀୟ ପୁରାଣ ଶାସ୍ତ୍ରଠାରୁ ଆରମ୍ଭକରି ପାଶ୍ଚାତ୍ୟର ବିଭିନ୍ନ ମତବାଦ ସମ୍ବନ୍ଧୀୟ ଅସଂଖ୍ୟ ଗ୍ରନ୍ଥ ପାଠ କରିଥିଲେ । ରଚନାର ଆବଶ୍ୟକୀୟ ସ୍ଥାନରେ ସେ ବିଭିନ୍ନ ଶାସ୍ତ୍ରପୁରାଣ ଓ ପାଶ୍ଚାତ୍ୟ ଗ୍ରନ୍ଥସମୂହରୁ ଉଦ୍ଧୃତ ଓ ଉଦାହରଣ ପ୍ରଦାନ କରିଛନ୍ତି ।

ସମସ୍ୟା ଜର୍ଜରିତ ଓଡ଼ିଆ ସାମାଜିକ ଜୀବନ ସମ୍ପର୍କରେ ତାଙ୍କର ପର୍ଯ୍ୟାପ୍ତ ଧାରଣା ଥିଲା । ତାଙ୍କର ବିଭିନ୍ନ ରଚନା ମଧ୍ୟରେ ସେହିସବୁ ସମସ୍ୟାର ପର୍ଯ୍ୟାଲୋଚନା କରାଯାଇଛି । ପ୍ରବନ୍ଧ, ଗଳ୍ପ, ଭ୍ରମଣ କାହାଣୀ ଓ କବିତାରେ କିଛି ନା କିଛି ସାମାଜିକ ସମସ୍ୟାର ଉଲ୍ଲେଖ ରହିଛି । କୁସଂସ୍କାର ଓ କୁସଂସ୍କାରକୁ ପ୍ରତିଷ୍ଠିତ କରାଇବା ପାଇଁ ପ୍ରୟାସରତ ସମାଜପତିଙ୍କ ବିରୁଦ୍ଧରେ ସେ ନିର୍ଭୀକଭାବରେ ଲେଖନୀ ଚାଳନା କରିଛନ୍ତି । ଜାତୀୟଜୀବନରୁ ସକଳ ସଂକୀର୍ଣ୍ଣତାକୁ ଦୂରୀଭୂତ କରି ଏକ ମହାନ ବିଶ୍ୱଜନୀନ ମାନବିକ ଆଦର୍ଶ ପ୍ରତିଷ୍ଠାର ପ୍ରେରଣା ଜଳନ୍ଧରଙ୍କ ରଚନାବଳୀରୁ ମିଳିଥାଏ ।

ଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ ସ୍ୱର୍ଗତଃ ଜଳନ୍ଧର ଦେବ ଥିଲେ ଆଧୁନିକ ଓଡ଼ିଆ ସାହିତ୍ୟର ଅନ୍ୟତମ ମାଇଲଖୁଣ୍ଟ ।

